Pick a PINKY...
and let
your writing
sparkle...

LION
# PINKY
the Prettiest Pencil
in town.

Now from Lion Pencils, here's another Novelty...
the Pearl finished **LION PINKY** pencil, a pretty pencil to behold.
Superb in looks, super smooth in writing with its HB Lead
strongly bonded to give you unbreakable points.

***Also available with rubber tip and hexagonal***

***Other popular brands of Lion Pencils are:***

Lion **MOTO,** Lion **TURBO,** Lion **SWEETY,** Lion **CONCORD,**
Lion Hi-Tech **METALLIC,** Lion **MASH-HOOR,** Lion **EXECUTIVE,**
Lion **NOVELTY,** Lion **GEEMATIC** Drawing Pencils
and **RATTAN** Colour Pencils & Wax Crayons.



**LION PENCILS PVT. LTD.** 95 Parijat, Marine Drive, Bombay 400 002.

National-407

# କେତୋଟି ପ୍ରଶ୍ନ



୧. ଓଡ଼ିଶା ଭୂଇଁରେ ଯୁଦ୍ଧର ସ୍ମୃତି ବହନ କରୁଥିବା ଗୋଟିଏ ସ୍ଥାନରେ ଶାନ୍ତିର ସମ୍ମାନରେ ଗୋଟିଏ ଇମାରତ୍ ନିର୍ମିତ ହୋଇଛି । ତାହା କେଉଁଠି ?

୨. ପଶ୍ଚିମ ଓଡ଼ିଶାର କେଉଁ ବିଶିଷ୍ଟ ବ୍ୟକ୍ତିଙ୍କ ନାମରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଗୋଟିଏ ବାର୍ଷିକ ସାହିତ୍ୟ-ସମ୍ମାନ ଜଣେ ଜଣେ ବିଶିଷ୍ଟ ସାହିତ୍ୟିକଙ୍କୁ ପ୍ରଦାନ କରିଥାନ୍ତି ?

୩. ଓଡ଼ିଶାର କେଉଁଠାରେ ସ୍ୱାଧୀନତାର ଅବ୍ୟବହିତ ପୂର୍ବଯାଏ ଗୋଟିଏ ଫରାସୀ ଉପନିବେଶ ଥିଲା ?

୪. ପରଲୋକଗତ ନେତା ଓ ମନୀଷୀ ଶ୍ରୀ ହରେକୃଷ୍ଣ ମହତାବ ଯେଉଁ ବାର୍ଷିକ ସାହିତ୍ୟ-ଉତ୍ସବର ଆୟୋଜନ କରିଥିଲେ ଓ ଯାହା ଓଡିଶା ବ୍ୟାପି ପାଳିତ ହେଲଣି, ତାର ନାମ କ'ଣ ?

୫. ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ସହ ଭାରତ ବାହାରର କେଉଁ ରାଜବଂଶର ନିବିଡ଼ ସମ୍ପର୍କ ରହିଛି ?

---

# ଏବଂ ସେସବୁର ଉତ୍ତର



୧. ଭୁବନେଶ୍ୱର ଅଦୂରବର୍ତ୍ତୀ ଧଉଳି ପାହାଡ଼ ଉପରେ ।

୨. ଶ୍ରୀଯୁକ୍ତ ଭରତ ଚନ୍ଦ୍ର ନାୟକଙ୍କ ସ୍ମୃତିରେ ।

୩. ବାଲେଶ୍ୱର ନିକଟବର୍ତ୍ତୀ ଫରାସଡାଙ୍ଗା ନାମକ ଗ୍ରାମରେ ।

୪. ବିଷୁବ ମିଳନ ।

୫. ନେପାଳ ରାଜବଂଶର ।

ସୌରଭ ମନମୁଗ୍ଧକାରୀ
ସଦ୍ୟତା ତନୁ ଆଘେରି

ନୂଆ
# ପ୍ରେମ୍
ସ୍ୱାଭାବିକ ରୂପେ ଆପଣଙ୍କର




ଏବେ ଏକ ସୁବିଧାଜନକ ଆକାର ଆଉ ନୂଆ ସୌରଭରେ ମିଳୁଛି




# ଜହ୍ନମାମୁଁ

ସମ୍ପାଦକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍ଡୀ

"କନକ ଉପତ୍ୟକାର କାହାଣୀ" ରେ ଗତ କେତେ ସଂଖ୍ୟା ଧରି ଏକ ଏକ ବିଚିତ୍ର ମୂଲକରେ ବଜୁର ଯେଉଁ ସବୁ ଅଭିଜ୍ଞତା ହେଉଛି, ଆମେ ସେହି ବିବରଣୀ ପଢୁଛୁଁ । ଏଣେ ସୁବର୍ଣ୍ଣ ପ୍ରତିମାକୁ କେନ୍ଦ୍ର କରି କ'ଣ ସବୁ ହେଉଛି ? ଏ ସଂଖ୍ୟାରେ ତାହାହିଁ ପଢ଼ିବା । ବର୍ତ୍ତମାନ ଆମେ ପୁଣି କନକ ଉପତ୍ୟକାରେ !

## ଅମରବାଣୀ

ପାତୟିତୁମେବ ନୀଚଃ ପର କାର୍ଯ୍ୟଂ, ବେତ୍ତି ନ ପ୍ରସାଧୟିତୁମ୍ ।
ପାତୟିତୁମସ୍ତି ଶକ୍ତିର୍ବାୟୋର୍ବୃକ୍ଷଂ, ନ ଚୋନ୍ନମୟିତୁମ୍ ॥

[ ଅନ୍ଧ ଝଡ଼ତୋଫାନ୍ ଦୀର୍ଘଦିନ ଧରି ବଢ଼ିଥିବା ବଡ଼ ବଡ଼ ଗଛକୁ ଭାଙ୍ଗି ଦେଇପାରେ, ସେମାନଙ୍କ ବୃଦ୍ଧିରେ ସହାୟତା କରେ ନାହିଁ । ମନ୍ଦ ଲୋକ ସେହିପରି ଅନ୍ୟର ଅନିଷ୍ଟ କରି ପକାନ୍ତି, କାହାର ହିତ କରନ୍ତି ନାହିଁ ।]

ବର୍ଷ : ୨୨ ଅଗଷ୍ଟ ୧୯୮୮ ଅଙ୍କ : ୨

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦

# Lakhani





## Study time.... Play time.... Any time....

## Lakhani Canvas Shoes

For comfort, easy wear and long-lasting quality.




3 Brothers LC 4086

***We think quality... we make quality... you get quality.***



Lakhani

The Footwear People

## ଜହ୍ନମାମୁଁ ସମ୍ବାଦ-ଘଟଣା



### ନକ୍ଷତ୍ର-ସ୍ନାନ

୧୯୮୭ ମସିହାରେ ଢନେ ଆମ ପୃଥିବୀର ସବୁ ଲୋକେ ଅଦୃଶ୍ୟ ନକ୍ଷତ୍ର-ଧୂଳିରେ ସ୍ନାନ କରିଛନ୍ତି। ମହାକାଶରେ ଧ୍ୱଂସ ପାଇଥିବା ଗୋଟିଏ ନକ୍ଷତ୍ରର ଧୂଳିକଣା ଭୂପୃଷ୍ଠରେ ବର୍ଷିତ ହୋଇ ପଡ଼ିଥିଲା।

### ଭୂମିକମ୍ପ

୧୯୮୫ ମସିହାରେ ପୃଥିବୀରେ ୭୬ ଥର ବଡ଼ ଧରଣର ଭୂମିକମ୍ପ ହୋଇଛି। ସାମାନ୍ୟ ଧରଣର ଭୂମିକମ୍ପ ତ ବହୁତ ଥର ହୋଇଛି। ଇକ୍ୱାଡୋର୍ ସୀମାନ୍ତରେ ସବୁଠୁଁ ବଡ଼ ଭୂମିକମ୍ପ ହୋଇଥିଲା। ସେଥିରେ ମରିଥିଲେ ହଜାରେ ଲୋକ।






### ଅପୂର୍ବ ଦସ୍ତଖତ୍

ଡକ୍ ହ୍ୱାଇଟ୍‌ହେଡ୍ ବୋଲି ଜଣକ ନାମରେ ଲଣ୍ଡନ୍‌ର ଗୋଟିଏ ବ୍ୟାଙ୍କ୍‌ରେ ବହୁତ ଟଙ୍କା ଅଛି। ସେଥିରେ ଆଶ୍ଚର୍ଯ୍ୟ କ'ଣ ବୋଲି କହୁଛ ତ? ଆଶ୍ଚର୍ଯ୍ୟ କିଛି ନାହିଁ, ମଜା ଅଛି। ଡକ୍ ହ୍ୱାଇଟହେଡ୍‌ର ବୟସ ମାତ୍ର ପନ୍ଦର ମାସ। ଆଉ ଗୋଟାଏ କଥା! ସେ ମଣିଷ ନୁହେଁ, କୁକୁର। ଗୋଟିଏ ଆଗ ପାଦରେ କାଳି ବୋଳି ସେ ଚେକ୍‌ରେ ଛାପ ଦିଏ। ତାହାହିଁ ତା'ର ଦସ୍ତଖତ୍।

### ଶାନ୍ତି ମଶାଲ୍

୧୯୪୫ ମସିହାରେ ଜାପାନର ହିରୋସୀମା ଉପରେ ପଡ଼ିଥିବା ପରମାଣୁ ବୋମା ଯେଉଁ ଧ୍ୱଂସଲୀଳା କରିଥିଲା, ସେହି ଅଗ୍ନିରୁ ପ୍ରସ୍ତୁତ ଗୋଟିଏ ମଶାଲ୍ ମିଳିତ ଜାତି ସଂଘକୁ ପଠାଯାଇଛି— ପୃଥ୍ୱୀର ବିଭୀଷିକା ସମ୍ପର୍କରେ ସମସ୍ତଙ୍କୁ ମନେ ପକାଇ-ଦେବା ନିମନ୍ତେ।



# ହାତୀ

ଜଣେ ଜମିଦାର ତାଙ୍କ ନିର୍ମିତ ମନ୍ଦିର ଆଗରେ ହାତୀର ଅବିକଳ ଯୋଡ଼ିଏ ମୂର୍ତ୍ତି ଥାପିବାକୁ ମନସ୍ଥ କରି ସେକଥା ତାଙ୍କର ନବ ନିଯୁକ୍ତ ଗୁମାସ୍ତାଙ୍କୁ କହିଲେ ଓ ନିଜକୁ ନିଜେ ପ୍ରଶ୍ନ କଲେ, "କେତେଦିନ ଲାଗିବ କେଜାଣି !"

ଗୁମାସ୍ତା ସଙ୍ଗେ ସଙ୍ଗେ ଯାଇ କାରଣୀଙ୍କୁ ପଚାରିଲେ, "ହାତୀଟିଏ ଗଢ଼ିବା ପାଇଁ କେତେଦିନ ଲାଗିବ ?"

କାରଣୀ କହିଲେ, "ହାତୀ ଗଢ଼ିବାକୁ ସମୟ ବେଶି ଲାଗିବ କାହିଁକି ? ଖାଲି ଦୁଇଟା ବଡ଼ ବଡ଼ ପଥର ହେଲେ ହେଲା ! ସାତଦିନ ଲାଗିପାରେ ।"

ଚୌକିଦାର ଆସି ସେ ଆଲୋଚନା ଶୁଣୁ ଶୁଣୁ କହିଲା, "ସାତଦିନ କାହିଁକି ? ବଡ଼ ବଡ଼ ପଥର ଦେହରେ ଶୁଣ୍ଢ, ଚାରି ଗୋଡ଼, ଦୁଇ ଦାନ୍ତ ଓ ଛୋଟିଆ ଛୋଟିଆ ଯୋଡ଼ିଏ ଆଖି ଖୋଳି ଦେଲେ ହେଲା । ଦିନକରେ ହୋଇଯିବ ।"

ଚୌକିଦାରର ସ୍ତ୍ରୀ ଶୁଣି ପକାଇ କହିଲା, "କ'ଣ କହିଲ ? ହାତୀ ଗଢ଼ିବାକୁ ପୁରା ଦିନଟିଏ ? କାହିଁକି ମ ? ଓଳିକରେ ହୋଇଯିବ ।"

ଗୁମାସ୍ତା ଯାଇ ଜମିଦାରଙ୍କୁ କହିଲେ, "ଆଜ୍ଞା, ହାତୀ ଓଳିକରେ ତିଆରି ହୋଇଯିବ !"

ଜମିଦାର ହସି ହସି କହିଲେ, "ତମମାନଙ୍କ ଆଲୋଚନା ମୋତେ ଶୁଭୁଥିଲା । ହାତୀ ଯିଏ ତିଆରି କରିବ, ସିଏ ଜାଣେ କେତେଦିନ ଲାଗିବ । ତାକୁ ତା'ର କଳାଜ୍ଞାନ ସହ ନିହଣ ହାତୁଡ଼ି ଦେଇ କାମ କରିବାକୁ ହେବ, ଛୁଚ୍ଛା କଳ୍ପନା ଦ୍ୱାରା ନୁହେଁ ।"





# ହରିହରର ଭାଗ୍ୟ !

ହରିହର ଯେତେବେଳେ ତରୁଣ, ସେତେବେଳେ ତା' ବାପା ହଠାତ୍ ରୋଗରେ ପଡ଼ିଲେ । ବାପାଙ୍କୁ ଗାଁ ଯାକର ସବୁ ଲୋକ ବହୁତ ଶ୍ରଦ୍ଧା କରୁଥିଲେ । କାରଣ ସେ ଯେପରି ସତ୍ ଥିଲେ, ସେହିପରି ପରୋପକାରୀ ଥିଲେ ।

ମୃତ୍ୟୁ ଶଯ୍ୟାରେ ବାପା ହରିହରଙ୍କୁ ପାଖରେ ବସାଇ କହିଲେ, "ପୁଅ, ସଂସାରରେ ସାଧୁତାହିଁ ଅସଲ ସମ୍ପଦ । ଯିଏ ସତ୍‌ମାର୍ଗରେ ଜୀବନ ବିତାଏ, ସେ ଯେ ଖାଲି ସନ୍ତୋଷ ପାଏ, ତାହା ନୁହେଁ, ଈଶ୍ୱର ବି ତାକୁ ଭଲ ପାଆନ୍ତି । ଯିଏ ଅନ୍ୟକୁ ଠକି, ଅନ୍ୟ ମନରେ କଷ୍ଟ ଦେଇ ଟଙ୍କା ପଇସା ଉପାର୍ଜନ କରେ, ସିଏ କେତେବେଳେ ହେଲେ ଶାନ୍ତି ସନ୍ତୋଷ ପାଏ ନାହିଁ । ତା'ଛଡ଼ା ଆଜି ହେଉ କାଲି ହେଉ, ତାକୁ ନିଜ ଅନ୍ୟାୟ ସକାଶେ ଦଣ୍ଡ ମଧ୍ୟ ପାଇବାକୁ ପଡ଼େ । ତୁ କେବେ ଧନୀ ହେବାକୁ ମନ ବଳାଇବୁ ନାହିଁ । ସାଧୁ ଭାବରେ ଯେତିକି ଉପାର୍ଜନ କରିବୁ, ସେଥିରେ ଚଳିବୁ ।"

"ବାପା, ତୁମେ ନିଶ୍ଚିନ୍ତ ରୁହ । ମୁଁ କେବେ ହେଲେ ଅନ୍ୟାୟ କରିବ ନାହିଁ ।" ହରିହର କହିଲା ।

"ଖାଲି ଅନ୍ୟାୟ କରିବୁ ନାହିଁ, ଏତିକି କଥା ଦେଲେ ଚଳିବ ନାହିଁ । ଅନ୍ୟର ଉପକାର କରୁଥିବୁ । ସେଥିରେ ବଳେ ବଳେ ସମସ୍ତଙ୍କ ଶୁଭେଚ୍ଛା ତୋ ଉପରେ ଓଜାଡ଼ି ହୋଇ ପଡ଼ିବ । ତାହା ଦ୍ୱାରା ତୋର ମଙ୍ଗଳ ହେବ ।" ବାପା କହିଲେ ।

"ଠିକ୍ ଅଛି । ମୁଁ ତୁମ ଉପଦେଶ ମାନିବି । କିନ୍ତୁ କେହି ଯଦି ମୋ ପ୍ରତି ଅନ୍ୟାୟ କରେ ?" ହରିହର ନିରୀହ ଭାବରେ ପଚାରିଲା ।

" ବସୁନ୍ଧର "



"ତୁ ତୋ ଦାୟିତ୍ୱ ଭଗବାନଙ୍କ ଉପରେ ଛାଡ଼ି ଦେ । କେହି ଯଦି ତୋ ପ୍ରତି ଅନ୍ୟାୟ କରେ, ତା'ର୍ ଫଳ ସେ ପାଇବ । ତୁ ସେ ଦିଗରେ କିଛି କରିବା ଦରକାର ନାହିଁ ।" ବାପା କହିଲେ ।

"ଆଉ କିଛି କହିବ ?" ହରିହର ପଚାରିଲା ।

"ହଁ । କାହାକୁ ଯଦି କିଛି କଥା ଦେଇଥିବୁ, ସେ କଥା ନିଶ୍ଚୟ ରଖିବୁ । ସେ ପାଇଁ ଯେତେ କଷ୍ଟ କରିବାକୁ ପଡୁ ନା କାହିଁକି । ତୋତେ ତୋ ପରିଶ୍ରମର ସୁଫଳ ଭଗବାନ ନିଶ୍ଚୟ ଦେବେ ।" ବାପା କହିଲେ ।

ଏହାର ଦୁଇଦିନ ପରେ ବାପା ପରଲୋକ-ଗମନ କଲେ । ଗାଁ ଲୋକଙ୍କ ସହଯୋଗରେ ହରିହର ବାପାଙ୍କ ଅନ୍ତ୍ୟେଷ୍ଟି କର୍ମ କଲା । ତା'ପରେ ବାପା ରଖିଯାଇଥିବା ଜମିବାଡ଼ରେ ପରିଶ୍ରମ କରି ନିଜ ଗୋଡ଼ରେ ଠିଆ ହେବାକୁ ଚେଷ୍ଟା କଲା ।

ବାପା ଯେତିକି ଜମିବାଡ଼ି ରଖି ଯାଇଥିଲେ, ସେଥିରୁ ସେ ବେଶ୍ ସ୍ୱଚ୍ଛନ୍ଦରେ ଚଳିପାରିବା ଭଳି ଉପାର୍ଜନ କରିପାରନ୍ତା । ହେଲେ ତା'ର ଅଧିକାଂଶ ସମୟ ଅନ୍ୟମାନଙ୍କ ସେବାରେ ଅତିବାହିତ ହେବାକୁ ଲାଗିଲା । ଗାଁରେ ବି ଏପରି ଲୋକ ଅନେକେ ଥିଲେ, ଯେଉଁମାନେ ତା' ସ୍ୱଭାବ ବୁଝି ତାଠୁଁ କାମ ଆଦାୟ କରିବାକୁ ଲାଗି ପଡ଼ିଲେ । ବିଶେଷତଃ ଗାଁ କବିରାଜ ତାକୁ ନିଜ ଘରର ଭଳି ଖଟାଉଥାନ୍ତି । ନିବିଡ଼ ବଣ ଭିତରକୁ ଯାଇ ହରିହର ତାଙ୍କ ପାଇଁ ଚେରମୂଳ ସଂଗ୍ରହ କରି ଆଣୁଥାଏ ।

ବର୍ଷଟିଏ ଗଲା । ହଠାତ୍ ଦିନେ ହରିହର ଅସୁସ୍ଥ ଅନୁଭବ କଲା । ସେ ଅବଶ୍ୟ ସେପାଇଁ ମୋଟେ ଚିନ୍ତା କରୁ ନଥିଲା । କାରଣ ବୈଦ୍ୟ ତା' ଅସୁସ୍ଥତା କଥା ଶୁଣିବା ମାତ୍ରେ ଯେ ଦୌଡ଼ି ଆସିବେ, ଏଥିରେ ତା'ର ତିଳେ ମଧ୍ୟ ସନ୍ଦେହ ନଥିଲା । ବୈଦ୍ୟ ତାକୁ ସ୍ନେହ କରନ୍ତି ବୋଲି ସିନା ତା'ଦେଇ ଏତେ କାମ କରାଇ ନଅନ୍ତି ! କେତେଥର ସେ ତାକୁ 'ପୁଅ' ବୋଲି ସମ୍ବୋଧନ କରିଥାନ୍ତି । ସେ ବୈଦ୍ୟଙ୍କ



ପାଖକୁ ଜଣେ ପ୍ରତିବେଶୀ ହାତରେ ଖବର ପଠାଇଲା। କିନ୍ତୁ ପ୍ରତିବେଶୀ ଲେଉଟି ଆସି କହିଲେ କି ବୈଦ୍ୟ କାହିଁ କିଛି କହିଲେ ନାହିଁ। ହରିହର ଭାବିଲା, ବୈଦ୍ୟ କହିବେ ଆଉ କ'ଣ? ସମୟ ପାଇବା ମାତ୍ରେ ସେ ଔଷଧ ଧରି ଆସିଯିବେ। କିନ୍ତୁ ଦୁଇଦିନ ଗଲା। ତା' ବେମାରି କମିଲା ନାହିଁ, ବରଂ ବଢ଼ିଲା। ଦୁଇଦିନ କଷ୍ଟ ପାଇବା ପରେ ସେ ଯାଇ କବିରାଜଙ୍କ ପାଖରେ ପହଞ୍ଚି ନିଜ ସ୍ୱାସ୍ଥ୍ୟ କଥା କହି ଔଷଧ ମାଗିଲା।

"ଔଷଧ ଦେଇ ତୋତେ ଦୁଇ ଦିନରେ ପୁରା ଭଲ କରିଦେବି। କିନ୍ତୁ ଔଷଧର ଦାମ ଦେଇପାରିବୁ ତ?" କବିରାଜ ପଚାରିଲେ।

"ହଁ, ହଁ, ଦାମ କାହିଁକି ନଦେବି? ତେବେ ପରେ ଦେବି। ବର୍ତ୍ତମାନ ମୋ ପାଖରେ ପଇସା ନାହିଁ।" ହରିହର କହିଲା।

"ତା'ହେଲେ ଔଷଧ ବି ପରେ ନେବୁ।" କବିରାଜ ସୋକ୍‌ଠୋକ୍ କହିଦେଲେ।

ହରିହର ଖୁବ୍ ଆଘାତ ପାଇଲା। ସେ କବିରାଜଙ୍କର ଏତେ ଉପକାର କରିଥିଲା ଯେ କବିରାଜ ତାକୁ ପଇସା ମାଗିବେ ବୋଲି ସେ କଳ୍ପନା କରି ନଥିଲା। ଦେଖିବା ବେଳକୁ କବିରାଜ ଯେ ଖାଲି ପଇସା ନେବେ ସେତିକି ନୁହେଁ, ପଇସା ନ ପାଇଲେ ସେ ଔଷଧ ଦେବେ ନାହିଁ!

ସେ କିଛି ନକହି ବୁଲି ପଡ଼ି ଚାଲିଗଲା।

ପିଣ୍ଡାରେ ତାକୁ ଅଟକାଇ ଦେଲା କବିରାଜଙ୍କ ଝିଅ ପଦ୍ମିନୀ। ସେ କବିରାଜ ଓ ହରିହର ଭିତରେ ହୋଇଥିବା କଥାବାର୍ତ୍ତା ଶୁଣିଥିଲା। ହରିହର କେତେ ଭଲ ମଣିଷ, ସେକଥା ସେ ଜାଣେ।

"କ'ଣ କହୁଛ, ପଦ୍ମିନୀ?" ନିଜର କଷ୍ଟ ସତ୍ତ୍ୱେ ହରିହର ଅଟକିଯାଇ ପଚାରିଲା। ପଦ୍ମିନୀ ପ୍ରତି ତା'ର ବହୁତ ସ୍ନେହ ଭାବ ଥିଲା। ସେ ଅତ୍ୟନ୍ତ ଭଲ ଝିଅ ବୋଲି ସେ ଜାଣିଥିଲା।

ଗମ୍ଭୀର ଭାବରେ ପଦ୍ମିନୀ କହିଲା, "ତମେ ଗୋଟାଏ କାମ କର। ନିଅ ଏ ସୁନା ଚୁଡ଼ି ହଳକ। ଯାଇ ବାପାଙ୍କୁ ଦେଇ କୁହ କି ଏହା



ତୁମ ବୋଉର। ଏହା ନେଇ ସେ ଔଷଧ ଦିଅନ୍ତୁ।"

ହରିହର ଆଖିକୁ ଜଳ ଆସିଗଲା। ସେ କହିଲା, "ଆଜି ସିନା ମୁଁ ତମ ପରାମର୍ଶ ଅନୁସାରେ କାମ କରି ଔଷଧ ପାଇଯିବି। କାଲିକୁ କୌଣସି ସମସ୍ୟା ଦେଖା ଦେଲେ ମୋତେ କିଏ ପରାମର୍ଶ ଦେବ?"

"ମୁଁ ଦେବି।" ପଦ୍ମିନୀ କହିଲା।

"ତମକୁ ସବୁବେଳେ ପାଇବି କାହୁଁ ଯେ ପରାମର୍ଶ ଲୋଡ଼ିବି?" ନିରାଶ ଭାବରେ ହରିହର ପ୍ରଶ୍ନ କଲା।

"କାହିଁକି ପାଇବ ନାହିଁ? ସେ ଦିଗରେ କ'ଣ କୌଣସି ଉପାୟ ନାହିଁ? କେବେ ଚିନ୍ତା କରି ଦେଖିଛ?" ପଦ୍ମିନୀ ପ୍ରଶ୍ନଟି କରି ମୁହଁ ତଳକୁ କରି ଠିଆ ହୋଇ ରହିଲା। ପଦ୍ମିନୀକୁ ସବୁଦିନ ପାଇଁ ପାଇବାର ଉପାୟ ସେତେବେଳକୁ ହରିହର ମୁଣ୍ଡକୁ ଆସିଲା। ଲଜ୍ଜା ଓ ଆନନ୍ଦରେ ମୁହଁ ଲାଲ୍ କରି ସେ ପଚାରିଲା, "ଏହା ସମ୍ଭବ? ତୁମେ ମୋତେ ବାହା ହେବ?"

"ନହେଲେ ମୋ ସୁନା ଚୁଡ଼ି ଦେଇ ଦିଅନ୍ତି?" ଏହା କହି ପଦ୍ମିନୀ ତରବରରେ ଘର ଭିତରେ ପଶିଗଲା।

ହରିହରର ମନେ ହେଲା, ତା' ସବୁ ଯନ୍ତ୍ରଣା ଓ ବେମାର ଦୂର ହୋଇ ଯାଇଛି। ଔଷଧ ଆଉ ତା'ର ଜମାରୁ ଲୋଡ଼ା ନାହିଁ। ସେ ଅନେକ ବେଳଯାଏ ପଦ୍ମିନୀ ଯେଉଁ ଦିଗକୁ ଗଲା, ସେଆଡ଼େ ଅନାଇ ଠିଆ ହୋଇ ରହିଲା।

ହରିହର ସୁନାଚୁଡ଼ି ଦୁଇପଟ ଧରି କବିରାଜଙ୍କ ଆଗରେ ପହଞ୍ଚି ତାହା ଦେଖାଇବା ମାତ୍ରେ କବିରାଜାଙ୍କ ମୁହଁର ରଙ୍ଗ ବଦଳିଗଲା। "ଆରେ ଝିଅ! ଏ ସୁନା ଚୁଡ଼ି ଦୁଇପଟ ରଖିଲୁ!" କବିରାଜ ଝିଅକୁ ଡାକି ଚୁଡ଼ି ଦେଇଦେଲେ ଓ ହରିହରକୁ ଔଷଧ ଦେଲେ। ଖାଲି ଔଷଧ ନୁହେଁ, ସେ ପଥ୍ୟ କରିବା ନିମନ୍ତେ ତା' ଘରକୁ ଅନେକ ଫଳମୂଳ ଓ ଦୁଧ ବି ପଠାଇ ଦେଲେ।

ହରିହର ସୁସ୍ଥ ହୋଇସାରି କବିରାଜଙ୍କୁ ଭେଟିଲା ଓ କହିଲା, "ମହାଶୟ, ଗୋଟାଏ ପ୍ରସ୍ତାବ ଅଛି।"

କବିରାଜ ତା' ଆଡ଼େ ଅନାଇଲେ ।

"ପଦ୍ମିନୀକୁ ବାଘ ହେବ ।" ହରିହର କହିଲା ।

କବିରାଜ ଅବାକ୍ ହୋଇଗଲେ । "ବାଘ ହେବୁ ? ହଇରେ ଟୋକା, ତୋ ସାହସ ତ କମ୍ ନୁହେଁ ? ସେ କେବେ ତୋତେ ପସନ୍ଦ କରିବ ?"

"ପସନ୍ଦ ନ କଲେ ମୋ ଅସୁବିଧା ବେଳେ ହାତରୁ ସୁନାଚୁଡ଼ି ଖୋଲି ଦେଇଥାନ୍ତା ?" ହରିହର ତା'ର ସବୁଦିନିଆ ନିରୀହ କଣ୍ଠରେ କହିଲା ।

କବିରାଜଙ୍କ ଆଗରେ ସବୁ ପରିଷ୍କାର ହୋଇଗଲା । ସେ କ୍ରୋଧରେ ଫାଟି ପଡିଲେ । "ତୁ ତେବେ ମୋତେ ଧୋକା ଦେଇଛୁ ? ମୋହରି ସମ୍ପଦରେ ମୋତେ ମୋ ମୂଲ୍ୟ ଦେଇଛୁ ?" ସେ ଚିତ୍କାର କଲେ ।

"ଆହା, ଆପଣ ରାଗୁଛନ୍ତି କାହିଁକି ? ଆପଣ ଯେମିତି କହିବେ ସେମିତି ଆପଣଙ୍କ ଋଣ ପରିଶୋଧ କରିଦେବି ।" ହରିହର କହିଲା ।

"କରିଦେବୁ ? ହେଉ । ମୋ ଘର ପଛପଟେ ଯେଉଁ ଖାତ ଅଛି, ମାଟି ଆଣି ତାକୁ ବୁଜାଇ ଦେ ।"

"ମାଟି କେଉଁଠୁ ଆଣିବି ?" ହରିହର ପ୍ରଶ୍ନ କଲା ।

"ତୋ ନିଜ ବାଡ଼ିରୁ ଆଣିବୁ, ଆଉ କେଉଁଠୁ ?" କବିରାଜ କହିଲେ ।



ବାସ୍ । ହରିହର କୌଣସି ଆପତ୍ତି ନକରି କାମରେ ଲାଗିଗଲା । ସବୁଦିନ ନିଜ ବାଡ଼ିରୁ ମାଟି ଖୋଳି କବିରାଜଙ୍କ ଖାତରେ ଆଣି ପକାଏ ।

ଲୋକେ ତାକୁ କହନ୍ତି, "ଏ ଗଧ ଖଟଣିର କିଛି ମାନେ ଅଛି ?"

"ଯେତେବେଳେ କଥା ଦେଇଛି, କଥା ରକ୍ଷିବି । ଭଗବାନ ବୁଝିବେ ।" ଏହି ଉତ୍ତର ଦେଇ ହରିହର କାମ କରିଯାଏ ।

ଏଣେ କବିରାଜ ଜଡ଼ିମୂଳି ଆଣିବା ପାଇଁ ଆଉ ହରିହରକୁ ନକହି ନିଜେ ବଣରେ ପଶିଲେ । ହଠାତ୍ ତାଙ୍କୁ ଗୋଟାଏ ଭାଲୁ ଗୋଡ଼ାଇଲା । ସେ ଅଟକି । ଗୋଟାଏ ଗୁମ୍ଫା



ଭିତରକୁ ପଶିଯାଇ ସେଠାରେ ଖଲ୍ଟାରୁ ଆହୁରି ବଡ଼ ବିପଦରେ ପଡ଼ିଲେ । ସେଠି ଡାକୁମାନେ ସହରରୁ ଲୁଣ୍ଠନ କରି ଆଣିଥିବା ସମ୍ପଦ ଭାଗ କରୁଥିଲେ । କବିରାଜଙ୍କୁ ଦେଖିବା ମାତ୍ରେ ପ୍ରଥମେ ଚମକି ପଡ଼ି ତା'ପରେ ପିଟିଲେ । ଯେତେବେଳେ ସେମାନେ ବୁଝିଲେ କି ସେ ସତରେ କବିରାଜ, ଗୁପ୍ତଚର ନୁହେଁ, ସେତେବେଳେ ସେମାନେ ତାଙ୍କୁ ଅନ୍ୟ କାମ ଦେଲେ । ସେମାନେ ବଣର ଗୋଟାଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ଡେରା ଉଠାଉଥିଲେ । କବିରାଜ ମହାଶୟଙ୍କ ମୁଣ୍ଡରେ ସେମାନଙ୍କ ଜିନିଷପତ୍ର ଥୁଆ ହେଲା । ସେ ଦୁଇଦିନ ଭିତରେ ବଣରୁ ଗୋଟାଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ଦଶ ଦଶଥରେ ଲେଖାଏଁ ବୋଝ ବୋହିଲେ । ସେହି ଅପମାନ ଓ ଦୁଃଖ ଭିତରେ ତାଙ୍କର ମନେହେଲା, ଏହା ହରିହର ପ୍ରତି ସେ କରିଥିବା ଅନ୍ୟାୟର ଫଳ । ବିଚରା ହରିହର ଏମିତି ବୋଝ ବୋହୁଛି !

ଏଣେ ହରିହର କବିରାଜଙ୍କ ବାଡରେ ଖାତ ପୂରାଇବା ପାଇଁ ନିଜ ବାଡ଼ରେ ମାଟି ଖୋଳୁଥାଏ । ହଠାତ୍ ତା' କୋଦାଳ କିଛି ଗୋଟାଏ ଧାତୁ ନିର୍ମିତ ପଦାର୍ଥରେ ଆଘାତ କଲା । ସେ ସାବଧାନ ହୋଇ ହାତରେ ଖୋଳି ଉପରକୁ ବାହାର କଲା ଗୋଟାଏ କଳସ । ସେଥିରେ ସୁନା ମୋହର ଭର୍ତ୍ତି ହୋଇଥାଏ ।

ସେ ମୁଠିଏ ମୋହର ଧରି ଯାଇ ପଦ୍ମିନୀକୁ ଦେଖାଇଲା ଓ ସବୁ କହିଲା । ପଦ୍ମିନୀର ଆନନ୍ଦ କହିଲେ ନ ସରେ । ସେ କହିଲା, "ତମେ ତମ ପରିଶ୍ରମ ବନ୍ଦ କର । ବାପା ବୋଧହୁଏ କୌଣସି ଦୂର ଗାଁକୁ ରୋଗୀ ଦେଖିବାକୁ ଯାଇଛନ୍ତି । ଆସିଗଲେ ସବୁ ଅଡୁଆ ତୁଟିଯିବ ।"

ଏହାର କିଛି ସମୟ ପରେ ଡାକୁମାନଙ୍କ କବଳରୁ ଛାଡ଼ ପାଇ କବିରାଜ ଆସି ପହଞ୍ଚିଲେ । "ଆରେ ଝିଅ, ହରିହର ଭଲ ସୁନା ପିଲା ଦୁନିଆରେ ବିରଳ । ମୁଁ ତା' ପ୍ରତି ଅନ୍ୟାୟ କରିବା ଯୋଗୁଁ ବିଧାତା ମୋତେ ଦଣ୍ଡ ଦେଲା । ତା'ର ଯିନା ଟଙ୍କା କଉଡ଼ି ନାହିଁ,

ତଥାପି ତୁ ତାକୁ ବିଭା ହେଲେ ମୋର ଆପତ୍ତି ନାହିଁ ।"

"ବାପା, ତା'ର ଟଙ୍କା କଉଡ଼ି ସିନା ନାହିଁ, କିନ୍ତୁ ପ୍ରଚୁର ସୁନା ଅଛି । ଦେଖିବ?" ଏହା କହି ପଦ୍ମିନୀ ବାପାଙ୍କୁ ମୁଠାଏ ମୋହର ଦେଖାଇଲା ।

କବିରାଜ ନିଜ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ତା'ପରେ ଝିଅଠୁଁ ସବୁ ଶୁଣିଲେ । ସଙ୍ଗେ ସଙ୍ଗେ ଝିଅକୁ ଧରି ସେ ଯାଇ ହରିହର ଘରେ ପହଞ୍ଚିଲେ । ଦେଖିବା ବେଳକୁ ହରିହର ମନ ଖରାପ କରି ବସିଛି ।

"କଥା କ'ଣ?" ପଚାରିଲା ପଦ୍ମିନୀ ।

"ବାପା କହିଥିଲେ କେବେ ହେଲେ ଧନୀ ହେବାକୁ ମନ ବଳାଇବୁ ନାହିଁ । କିନ୍ତୁ ମୁଁ ତ ଧନୀ ହୋଇଗଲି ! ଗାଁ ଲୋକେ କହୁଛନ୍ତି, ମୋର ବର୍ତ୍ତମାନ ଯେତେ ଧନ, ଏ ଅଞ୍ଚଳରେ ଆଉ କାହାରି ସେତେ ନାହିଁ!" ହରିହର କାନ୍ଦ କାନ୍ଦ ହୋଇ କହିଲା ।

ପଦ୍ମିନୀ ଓ କବିରାଜ ଦୁହେଁ ହସିବେ ନା କାନ୍ଦିବେ? ପଦ୍ମିନୀ କହିଲା, "ବାପା କହିଥିଲେ ତମେ ଧନୀ ହେବାକୁ କେବେ ମନ ବଳାଇବ ନାହିଁ । ତମେ କ'ଣ ମନ ବଳାଇଥିଲ? ଧନ ଭଗବାନଙ୍କ ଇଚ୍ଛାରୁ ବଳେ ବଳେ ତମ ହାତରେ ପଡ଼ିଲା । ତମର ଦୋଷ କ'ଣ?

"ଠିକ୍ କଥା ତ!" ହରିହର ମୁହଁରେ ଏଥର ହସ ଫୁଟିଲା । ତା'ପରେ ସେ ବିମର୍ଷ କଣ୍ଠରେ କହିଲା, "ପଦ୍ମିନୀ, ତମେ ଆଜି ସିନା ଏକଥା କହି ମୋର ଯାତନା ଦୂର କଲ, କାଲି, ତହିଁ ପରଦିନ କିଏ ମୋତେ ଏଭଳି କଥା କହିବ?"

"କାହିଁକି ପୁଅ? ପଦ୍ମିନୀ କହିବ । ମୁଁ ବର୍ତ୍ତମାନ ଯାଇ ପାଞ୍ଜି ଦେଖୁଛି । କେତେ ପାଖରେ ବିବାହ ତିଥି ଅଛି ଦେଖିବା ।" କବିରାଜ କହିଲେ ।

ପଦ୍ମିନୀ ଲାଜରେ ବୁଲି ପଡ଼ିଲା ।



# କଥା କ'ଣ ?

ଦଳେ ଯାତ୍ରୀ ତୀର୍ଥ ଦର୍ଶନ ପାଇଁ ପୁରୀ ଯାଉଥିଲେ। ବାଟରେ ସେମାନଙ୍କ ସହ ମିଶିଗଲେ ଦୁଇଜଣ ଯୁବକ।

କିଛି ସମୟ ନୀରବରେ ଚାଲିବା ପରେ ଜଣେ ଯୁବକ ଅନ୍ୟ ଜଣକୁ ପଚାରିଲା, "ତମ ଘର କେଉଁଠି ?"

"କଟକ ଜିଲ୍ଲାର ଯୋଗୀପୁର ଗାଁରେ।"

"ଯୋଗୀପୁର ଗାଁରେ ? ଆରେ ଭାଇ, ମୋ ଘର ବି ତ ଯୋଗୀପୁର ଗାଁରେ। ତମ ଘର ଠିକ୍ କେଉଁଠି ?" ପ୍ରଥମ ଯୁବକ ପୁଣି ପଚାରିଲା।

"ଶିବ ମନ୍ଦିର ବାମ ପାଖ ଦ୍ୱିତୀୟ ଘର !"

"ଆରେ ଭାଇ, ମୋ ଘର ବି ତ ଶିବ ମନ୍ଦିର ବାମ ପାଖ ଦ୍ୱିତୀୟ ଘର !"

ସେମାନଙ୍କର କଥାବାର୍ତ୍ତା ଶୁଣୁଥିବା ଯାତ୍ରୀମାନେ ବିସ୍ମୟଭରେ ପଚାରିଲେ, "ଏକା ଗାଁରେ, ଏକା ଘରେ ରହି ଦୁହେଁ ଦୁହିଁଙ୍କୁ ଚିହ୍ନି ନାହଁ ? କଥା କ'ଣ ?"

ଦୁଇ ଯୁବକ ହସିଲେ ଓ ଜଣେ କହିଲା, "କଥା କ'ଣ କି, ଅନେକ ସମୟ ଚୁପ୍‌ଚାପ୍ ରହିବା ଫଳରେ ବଡ଼ ବିରକ୍ତ ଲାଗୁଥିଲା। ତେଣୁ ଗୋଟାଏ କିଛି ବିଷୟରେ କଥାବାର୍ତ୍ତା ଆରମ୍ଭ କରିବାକୁ ହେବତ ? ଅସଲରେ ଆମେ ଦୁଇ ଭାଇ।"





# କନକ ପ୍ରତିମାର କାହାଣୀ

[ ୮ ]

[ଭୂମିକମ୍ପ ଯୋଗୁଁ ପର୍ବତ ଉପରେ ଲୁଚି ରହିଥିବା ଏକ ସୁବର୍ଣ୍ଣ ପ୍ରତିମା ଦୃଶ୍ୟମାନ ହୁଅନ୍ତେ ଲୋଭୀ ରାଜା ତାକୁ ବଶ କରିବା ନିମନ୍ତେ ଉଦ୍‌ଗ୍ରୀବ ହୋଇ ପଡ଼ିଲେ। ରାଜାଙ୍କ ବିଷ ଦୃଷ୍ଟିରେ ପଡ଼ିଥିବା ରାଜୁ ସେ ପ୍ରତିମା କିପରି ଜୀବନ୍ୟାସ ପାଇବ ସେ ରହସ୍ୟର ସନ୍ଧାନରେ ଏକ ଏକ ଅଦ୍ଭୁତ ମୁଲକ ପାର ହେଉଥାଏ। ଏଣେ ରାଜା କିନ୍ତୁ ଅତ୍ୟନ୍ତ ଉତ୍କଣ୍ଠିତ ହେଉଥାନ୍ତି। ତା'ପରେ...]

ରାଜୁ ରହସ୍ୟମୟ ଜଳପ୍ରପାତ ଅତିକ୍ରମ କରି ସମସ୍ତଙ୍କ ଦୃଷ୍ଟି ଆଢୁଆଳକୁ ଚାଲିଯିବା ପରେ ମାତ୍ର କେତୋଟି ଦିନ ବିତିଥାଏ, କିନ୍ତୁ ରାଜାଙ୍କର ଆଉ ତର ସହୁ ନଥାଏ। ପାହାଡ଼ ଶିଖରରେ ତଥା ସବୁଠୁଁ ଉଚ୍ଚ ଗଛମାନଙ୍କ ଉପରେ ଦିନରାତି ପାଳକରି ସିପାହୀମାନେ ଦିଗ୍‌ବଳୟକୁ ଅନାଇଥାନ୍ତି। ରାଜୁ ଦେଖାଯିବା ମାତ୍ରେ ପ୍ରଥମେହିଁ ରାଜା ଯେ ଖବର ପାଇବା ଚାହିଁ! ଖାଇବାକୁ ବସି ଲଡୁ ଥାଳି ଦେଖିବା ମାତ୍ରେହିଁ ରାଜା ସୁବର୍ଣ୍ଣ ପ୍ରତିମା କଥା ବିଶେଷ ଭାବରେ ମନେ ପକାଉଥାନ୍ତି। କାରଣ ତାଙ୍କ ପାଇଁ ସେ ସୁନ୍ଦରୀ ଲଡୁଭଳି ଲୋଭନୀୟ। ମନେ ପକାଇ ସେ ସଙ୍ଗେ ସଙ୍ଗେ ପର୍ବତ ପାଖକୁ ଦୌଡ଼ିବେ। କିନ୍ତୁ ସେଠି ପହଞ୍ଚିଯିବା ମାତ୍ରେ ପୁଣି ପଛରେ

ମନୋଜ ଦାସ



ଛଡ଼ କଳ ଓ ନଗ ଏବଂ ଚନ୍ଦନ ଦ୍ୱାରେ କେଶ କାଟଛାଟ କରୁଥିଲେ। ପ୍ରତି ଅଙ୍ଗକୁ ବର୍ତ୍ତମାନ କାମୁଡ଼ି ଧରିଥିଲେ ଯୋଡ଼ିଏ ଲେଖାଏଁ ମୁଦି; କଣ୍ଠରୁ ଓହଳି ପଡ଼ୁଥିବା ଶତାଧିକ ରତ୍ନହାର ଓଜନରେ ବେଗେ ନଇଁ ପଡ଼ୁଥିଲେ।

"ପ୍ରଭୁ! ଚଣ୍ଡ ପ୍ରଚଣ୍ଡ! ଆପଣ ଦିଶୁଛନ୍ତି ଅପୂର୍ବ! ଇତିହାସରେ କେହି କେବେ ଏମିତି ଦିଶି ନଥିଲେ।" ଜଣେ ଅମାତ୍ୟ ଏକଥା କହିଲେ ଆଉ ଜଣେ କହୁଥିଲେ, "ଭୂଗୋଳରେ ବି ନୁହେଁ!" କିନ୍ତୁ କ୍ରମେ ଅମାତ୍ୟମାନେ ହୃଦୟଙ୍ଗମ କଲେ କି ଏଭଳି ଗତାନୁଗତିକ ପ୍ରଶଂସା ରାଜାଙ୍କୁ ବିଶେଷ ଆପ୍ୟାୟିତ କରୁନାହିଁ। ସେମାନେ ସେଇଠୁ ଉପମା ପ୍ରୟୋଗ କଲେ, ଯଥା, "ଆପଣ ଫୁଲଟିଏ ଭଳି ଦିଶୁଛନ୍ତି ମହିମା!" "ସାକ୍ଷାତ୍ ପ୍ରଜାପତି ଭଳି!" "ଇନ୍ଦ୍ରଧନୁକୁ ବଳି ମହାରାଜ!" କିଛିଦିନ ଏଥିରେ ଚଳିଗଲା। କିନ୍ତୁ ଏହା ବି ପୁରୁଣା ହୋଇଗଲା। ଦୁଇଜଣ ସଭା କବି ଅମାତ୍ୟମାନଙ୍କୁ ନୂଆ ନୂଆ ଉପମା ବିକ୍ରି କରି ଦୁଇ ପଇସା ଉପାର୍ଜନ କଲେ। ସେ ସାଫଲ୍ୟରେ ଉତ୍ସାହିତ ହୋଇ ସେମାନେ ନୂଆ ନୂଆ ଶବ୍ଦ ଉଦ୍ଭାବନ କଲେ। ଯେତେବେଳେ ଅମାତ୍ୟମାନେ କହିଲେ କି "ମହାରାଜ, ଆପଣ ଫୁଇଙ୍ଗ୍‌ଲ୍-ଲୁଇଙ୍ଗଲ୍ ଭଳି ଲୋଭମୟ ଦିଶୁଛନ୍ତି", ଅଥବା "ଜର୍ଜର ବର୍ଜର ଭଳି ଉଜ୍ଜ୍ୱଳ ଦିଶୁଛନ୍ତି", ସେତେବେଳେ ରାଜା ଲାଜେଇ ଯାଉଥିଲେ। ଶବ୍ଦ ଗୁଡ଼ିକ ତାଙ୍କୁ ବେଶ୍

ଛଡ଼ ଆସିଥିବା ଲଡୁଥାଳ ତାଙ୍କର ମନେ ପଡୁଥାଏ। କ'ଣ କରାଯିବ? ଅଭିବଙ୍କ ମନ୍ତ୍ରୀମାନେ ଏଇ ବ୍ୟବସ୍ଥା କଲେ: ରାଜା ଖାଇବା ଥାଳ ଛଡ଼ ଉଠିଯିବା ମାତ୍ରେ ତିରିଶରୁ ଅଧିକ ସେବକ ତିରିଶରୁ ଅଧିକ ଖାଦ୍ୟ ପାତ୍ରମାନ ଧରି ତାଙ୍କ ପଛରେ ଦୌଡ଼ିବେ। "ବର୍ତ୍ତମାନ ଆମ୍ଭେ କପରି ଦିଶୁଛୁଁ?" ହଠାତ୍ ରାଜା ଜଣେ ଜଣେ ଅମାତ୍ୟଙ୍କୁ ଏ ପ୍ରଶ୍ନ ପଚାରି ଦେଉଥିଲେ। ରାଜା ନିଜକୁ ସେ ପ୍ରତିମାର ଯୋଗ୍ୟ ବରପାତ୍ର କରି ଗଢ଼ିବା ନିମନ୍ତେ କେତେ ପରିଶ୍ରମ କରୁଥିଲେ, ସେକଥା ସଭିଏଁ ଜାଣିଥିଲେ। ସେ ଦୁଇଗୁଣ ଆହାର କରୁଥିଲେ; ନିର୍ମଳ ଲହୁଣୀରେ ଦେହ ମାଜୁଥିଲେ। ଦିନେ



ମଧୁର ଶୁଭୁଥିଲା; ଅର୍ଥ ପ୍ରତି କୌତୁହଳୀ ହେବାଭଳି ଅବସର ତାଙ୍କର ନଥିଲା ।

ଦିନେ ମହାମନ୍ତ୍ରୀ ରାଜାଙ୍କୁ କହିଲେ, "ପ୍ରତିମାକୁ ଯଦି କୌଣସି ମତେ ଥରେ ହସାଇ ହୁଅନ୍ତା, ତେବେ ବଳେ ତା' ହୃତ୍‌ଯନ୍ତ୍ର ଚାଲିବାକୁ ଆରମ୍ଭ କରନ୍ତା ଓ ଆଖିପତା ପଡ଼ନ୍ତା । ଆଉ, ମହାରାଜ! ତ୍ରିଲୋକରେ ଏଭଳି କୌଣସି ପ୍ରାଣୀ ଅଛି ଯାହାର ହୃତ୍‌ଯନ୍ତ୍ର ଚାଲୁଥିବ ଅଥଚ ତୁମଙ୍କୁ ଦେଖି ଅଥବା ତୁମଙ୍କ ବାସନା ପାଇ ଯାହାର ହୃଦୟ ଉଦ୍‌ବେଳିତ ନହେବ?"

ମହାମନ୍ତ୍ରୀଙ୍କ କଥାଟି ରାଜାଙ୍କୁ ବଡ଼ ଯୁକ୍ତିଯୁକ୍ତ ମନେହେଲା । ପ୍ରଶ୍ନ ହେଲା, ପ୍ରତିମା କିପରି ହସିବ!

ଜଣାଶୁଣା ବୟସ୍ୟ ବିଦୂଷକ ତଥା ରାଜା ଓ ଅମାତ୍ୟମାନଙ୍କ ଆଖିରେ ଯେଉଁମାନେ ବୁଦ୍ଧୁ, ସେମାନଙ୍କୁ ଧରି ଅଣାଗଲା । ସେମାନଙ୍କ ସକାଶେ ମଜାଦାର ପୋଷାକ ତିଆରି କରାଯିବା ନିମନ୍ତେ ରାଜକୋଷର ଏକାଧିକ ଦ୍ୱାର ଖୋଲି ଦିଆଗଲା । ସେମାନେ ପ୍ରତିମା ଆଗରେ ନଗ୍ନନଚ କଲେ । ସେମାନେ କ୍ଳାନ୍ତ ଦେଖାଗଲେ ଛୁରୀ ଦେଖାଇ ସେମାନଙ୍କୁ ନଗ୍ନନଚ କରିବାକୁ ବାଧ୍ୟ କରାଗଲା— ସେମାନେ ଚେତାହରାଇ ପଡ଼ିଯିବା ପର୍ଯ୍ୟନ୍ତ!

ରାଜା ଘୋଷଣା କରିଥିଲେ କି ଯିଏ ପ୍ରଥମେ ପ୍ରତିମା ମୁହଁରେ ହସ ଦେଖିବ, ତା' ନିଜ ଦାନ୍ତତକ ସୁନାରେ ବାନ୍ଧି ଦିଆଯିବ ।

ଦିନେ ରାତିରେ, ସୁନା ଦାନ୍ତର ସ୍ୱପ୍ନରେ ବିଭୋର ଜଣେ ପ୍ରହରୀର ମନେ ହେଲା, ଶତହ ସରିକ ମଶାଲ ଆଲୁଅରେ ଝଟକୁଥିବା ପ୍ରତିମା ମୁହଁରେ ମୁହୂର୍ତ୍ତକ ପାଇଁ ଅବା ହସରି ତରଙ୍ଗ ଖେଳିଗଲା! ରାଜାଙ୍କ ପାଖରେ ପହଞ୍ଚିଲା ସେ ଖବର । ସେ ମଣୋହିରରେ ବସିଥିଲେ । ଉଠି ପଡ଼ି ଦୌଡ଼ିଲେ । ପଛରେ ଦୌଡ଼ିଲେ ଅର୍ଦ୍ଧ ଭୁକ୍ତ ତିରିଶରୁ ଅଧିକ ଖାଦ୍ୟ ଥାଳି ଧରି ତିରିଶରୁ ଅଧିକ ତାଲିମ୍‌ପ୍ରାପ୍ତ ସେବକ ।

କିନ୍ତୁ ହାୟ, ରାଜା ଯତ୍‌ପରୋନାସ୍ତି ତର୍ଜି ଚାହିଁଲେ ମଧ୍ୟ ପ୍ରତିମା ମୁହଁରେ ହସର କୌଣସି ଆଭାସ ଦେଖିଲେ ନାହିଁ ।

"ପ୍ରହରୀ! ତୋ ଦାନ୍ତତକ ସୁନାରେ ବାନ୍ଧି ଦେବା, କିନ୍ତୁ ତୋ ଆଖି ଯୋଡ଼ିକ ଉପାଡ଼ି ନେବା । କାରଣ ପ୍ରତିମା ଯଦି ହସିଲା, ତେବେ



ସେ ହସ ପ୍ରଥମେ ଆମ୍ଭେ ଦେଖିବା ଉଚିତ ଥିଲା। ତୋ ଆଖିର ଏଡ଼େ ବହପ ଯେ ସିଏ ପ୍ରତିମାର ହସ ଦେଖିଦେବ ଅଥଚ ଆମ୍ଭେ ଦେଖିବା ବେଳକୁ ହସ ଉଡିଯାଇଥିବ ?" ରାଜା କହିଲେ।

ପ୍ରହରୀର ସୌଭାଗ୍ୟ, ସେତିକିବେଳେ ଜଣେ ବିଖ୍ୟାତ ଯାଦୁକର ଆସି ପହଞ୍ଚିବାର ସମ୍ବାଦ ଦେଲେ ଜଣେ ଅମାତ୍ୟ। "ମହାରାଜ! ଇଏ ଜଣେ କରିତ୍‌କର୍ମା ପୁରୁଷ!" ଅମାତ୍ୟ କହିଲେ। "ହଁ, ମହାରାଜ, ମୁଁ କରିତ୍‌କର୍ମା।" ଯାଦୁକର ସ୍ୱୀକାର କଲା। ସଙ୍ଗେ ସଙ୍ଗେ ସେ ତାଳି ବଜାଇଲା ଓ ତାର ଜଣେ ସହକାରୀ ଗୋଟିଏ ଭାଲୁକୁ ଟାଣି ଟାଣି ନେଇ ଆସିଲା। "ଛାମୁ! ଆପଣ କ'ଣ ଦେଖୁଛନ୍ତି ?" ଯାଦୁକର ପ୍ରଶ୍ନ କଲା। "ହଇହେ, ଭାଲୁଟାଏ ଦେଖାଇ ତମେ ହେବ କରିତ୍‌କର୍ମା ?" ରାଜା ହତାଶ ହେବା ଭଙ୍ଗୀରେ କହିଲେ। "ଭାଲୁର ଗନ୍ଧ ଆମକୁ ସୁଖ ଲାଗେ ନାହିଁ। ନେଇ ଯାଅ!" ସେ ନିର୍ଦ୍ଦେଶ ଦେଲେ।

"ମଣିମାଙ୍କୁ ଯଦି ସୁଖ ନ ଲାଗିଲା, ତେବେ ତୋର ଭାଲୁ ହୋଇ ରହିବା ଦରକାର କ'ଣ ?" ଯାଦୁକର ଭାଲୁକୁ ଏ ପ୍ରଶ୍ନ କରି ତାକୁ ଗୋଇଠା ମାରିଲା। ଭାଲୁ ତଳେ ପଡିଗଲା। ଯାଦୁକରର ସହକାରୀମାନେ ତା' ଉପରେ ଘୋଡ଼ାଇଦେଲେ ଖଣ୍ଡିଏ କମ୍ବଳ। ଯାଦୁକର ତା' ଚାରିକଡ଼େ ବୁଲି ବୁଲି ତାକୁ ଚାବୁକ ମାରୁଥାଏ। କମ୍ବଳ ତଳେ ଜୀବଟି ଛଟପଟ ହେଲାଭଳି ମନେ ହେଉଥାଏ। ଯାଦୁକର କିଛି ଅବୋଧ ମନ୍ତ୍ର ପଢି ତା'ପରେ କହିଲା "ବୁମ୍!"

କମ୍ବଳ ଫୋପାଡି ଦେଇ ଡେଇଁ ପଡି ଠିଆ ହୋଇଗଲା ଗୋଟାଏ ମଣିଷ। ରାଜା ତାକୁ ନିରେଖି ଦେଖିଲେ। ନା, ତା ଦେହରେ ଇଞ୍ଚେ ମଧ୍ୟ ଭାଲୁତ୍ୱ ନଥିଲା; ଇଞ୍ଚେବି ଲାଞ୍ଜ ନଥିଲା। ସିଏ ମଣିଷ ବୋଲି ରାଜାଙ୍କର ହୃଦ୍‌ବୋଧ ହେଲା। ସେତେବେଳେ ସେଠାରେ ବେଶି ଲୋକ ନଥିଲେ। ପ୍ରତିମାର ପ୍ରହରୀମାନେ ଏବଂ ଛାମୁଙ୍କ ମନୋହର ଥାଳିଟିମାନ ଧରି ଠିଆ ହୋଇଥିବା ପରିଚାରକ-ମାନେ ନିଜ ତରଫରୁ ରାଜାଙ୍କ ସହ କଥା କହିବାର ବିଧି ନଥିଲା। ଯେଉଁ କେତେଜଣ ଖାସ ମିଶି ସେଠି ଆସି ପହଞ୍ଚିଥିଲେ, ସେମାନେ ନିଜ ନିଜ



ବିଦ୍ୟାବୁଦ୍ଧିକୁ ରାଜାଙ୍କ ବିଦ୍ୟାବୁଦ୍ଧି ସହ ଏତେ ସମତଳ ଭାବରେ ଖାପ୍ ଖୁଆଇ ନେବାକୁ ଶିଖିଥିଲେ ଯେ ଭାଲୁଟାଏ କମ୍ବଳ ଘୋଡ଼ହୋଇ ମଣିଷ ପାଲଟିଗଲା ବୋଲି ଧରିନେବାକୁ ସେମାନେ ଟିକେ ବି ଦ୍ୱିଧା କରୁ ନଥିଲେ। ତେବେ ଦୂରରେ ଠିଆ ହୋଇ ସେ ଦୃଶ୍ୟ ଦେଖୁଥିବା କେଇଜଣ ସାଧାରଣ ଲୋକଙ୍କ କଥା ଅବଶ୍ୟ ଅଲଗା। ଭାଲୁଟି ଅସଲରେ ଭାଲୁ ଛାଲ ପିନ୍ଧିଥିବା ମଣିଷ ଓ କମ୍ବଳ ତଳେ ଛାଲଟି ଲୁଚି ରହିଛି ବୋଲି ସେମାନେ ସନ୍ଦେହ କରୁଥିଲେ; କିନ୍ତୁ ସେମାନେ ପାଟି ଫିଟାଉ ନଥିଲେ।

ଜଣେ ବଙ୍କ ମନ୍ତ୍ରୀ ମଣିଷରେ ପରିଣତ ଭାଲୁ ସେପାଏ ଭାଲୁ ଭଳି ବାସୁଛି କି ନାହିଁ ଜାଣିବା ପାଇଁ ନିଜ ନାକଟିକୁ ତା'ର ଅତି ପାଖକୁ ନେଇ ଯାଇଥିଲେ। ନୂଆ ମଣିଷଟି ରାମ୍ପୁଡ଼ି ଦେଲା। ତାଙ୍କ ନାକରୁ ଲହୁ ବାହାରିଲା।

"ତା'ର ଭାଲୁ ପ୍ରକୃତି ପୁରାପୁରି ଯାଇନାହିଁ, ମହିମା।" ଯାଦୁକର ବୁଝାଇଦେଲା ଓ ପୁଣି କହିଲା, "କିନ୍ତୁ ବେଶି ଡେରି ଲାଗିବ ନାହିଁ। କାଲି ଏତିକିବେଳକୁ ସେ ଏକା ବାରଜଣ ମନ୍ତ୍ରୀଙ୍କ ଭଳି କଥା କହିବ। ନଖ ବ୍ୟବହାର ନକରି ଆମ ଭଳି ସଭ୍ୟ ଲୋକଙ୍କ ସଂସ୍କାର ଗ୍ରହଣ କରି ଛୁରୀ ବ୍ୟବହାର କରିବ।"

ପାତ୍ର ମିତ୍ରମାନେ ଆତଙ୍କିତ ଭାବରେ ପରସ୍ପର ଚୁହାଁଚୁହିଁ ହେଲେ।

"ମହାରାଜ! ଭାଲୁକୁ ମଣିଷ ବନାଇ ପାରୁଥିବା ଏ ଯାଦୁକର ସମ୍ପର୍କରେ ଆପଣଙ୍କର ଧାରଣା କ'ଣ?" ଯାଦୁକର ସଗର୍ବେ ପ୍ରଶ୍ନ କଲା।

"ମୋର ଧାରଣା, ତମେ ଆହୁରି ଗୋଟାଏ ଭାଲୁ ପାଇଲେ ବି ତାକୁ ମଣିଷ କରିଦେବ। କିନ୍ତୁ ଥାଉ। ଆମ ରାଜ୍ୟରେ ମଣିଷଙ୍କର ଅଭାବ ନାହିଁ; ଭାଲୁଙ୍କର ଅଭାବ।" ରାଜା କହିଲେ।

"ଆହାହା, ଆହାହା!" ରାଜାଙ୍କ ଜ୍ଞାନ-ଗର୍ଭକ ବକ୍ତବ୍ୟ ଉପରେ ଉଚ୍ଛ୍ୱସିତ ଟିପ୍ପଣୀ ଦେଲେ ଅମାତ୍ୟବର୍ଗ।

"ମହାରାଜ, ଯେଉଁ କରିତ୍କର୍ମା ଭାଲୁକୁ ମଣିଷ କରିଦେଲା, ସିଏ ପଥର ପ୍ରତିମାକୁ ଜୀବନ୍ୟାସ ଦେଇପାରିବ—ଏକଥା ଆପଣଙ୍କ

ମୁଣ୍ଡକୁ ଆସୁଛି ନା ନାହିଁ ?" ଯାଦୁକର ଅଧୈର୍ଯ୍ୟ ହୋଇ ପଚାରିଲା ।

"ଆସିଗଲା ! ଆସିଗଲା !!" ରାଜା ଖୁସିରେ ଅସମ୍ଭାଳ ଦେଖାଗଲେ । "ଆମେ ନାଚିବାକୁ କୁଦିବାକୁ ଇଚ୍ଛା କରୁଁ । କିନ୍ତୁ ସମ୍ଭବ ନୁହେଁ ।" ସେ ହଠାତ୍ ସାମାନ୍ୟ ବିମର୍ଷ ହୋଇ ପଡ଼ିଲେ ।

"ମଣିମାଙ୍କ ଦର୍ଶନାୟୁ ପେଟ ମଣିମାଙ୍କୁ ତାହା କରାଇ ଦେଉନାହିଁ ତ ? ମୁଁ ଆପଣଙ୍କୁ କଥା ଦେଉଛି, ପ୍ରତିମା ଜୀବନ୍ୟାସ ପାଇବା ବେଳକୁ ପେଟରେ ଏ ରୂପ ନଥିବ ।" ଯାଦୁକର ଗମ୍ଭୀର ଭାବରେ କହିଲା ।



"ଯାଦୁକର ମହାଶୟ ! ଆଉ ବିଳମ୍ବ କାହିଁକି ? ପ୍ରତିମାକୁ ଏଇକ୍ଷଣି ତମ ଯାଦୁ କମ୍ବଳରେ ଘୋଡ଼ାଇ ପକାଇ ଯେମିତି ପିଟାପିଟି କରିବା କଥା, କର । ଆମକୁ ଏତେ ଦିନ ଧରି ଅପେକ୍ଷା କରାଇବା ବାବଦରେ ପ୍ରତିମା କିଛି ଶିକ୍ଷା ପାଇବା ଉଚିତ !" ରାଜା ଆବ୍‌ଦାର୍ କରି କହିଲେ ।

ଯାଦୁକର କଣ୍ଠସ୍ୱର ଆହୁରି ଅଧିକ ଗମ୍ଭୀର କରି କହିଲା, "ଲୁଚ୍ଚା କମ୍ବଳ ଘୋଡ଼ାଇ ଏ କାମ ହୋଇପାରିବ ନାହିଁ, ମହାରାଜ ! ଏ କ୍ଷେତ୍ରରେ ଭିନ୍ନ ନିୟମ ପାଳିବାକୁ ହେବ । ଆପଣ ଏକ ସପ୍ତାହ ଉପବାସ କରିବା ଲୋଡ଼ା । ପୁଣି ପ୍ରତିମା ପଛରେ ଥିବା ଗୁମ୍ଫା ଭିତରେ ବସି ଧ୍ୟାନ କରିବାକୁ ହେବ । ତେବେ ଯାଇ ଫଳ ହେବ ।"

"ଉପବାସ ? ସପ୍ତାହେ କାଳ ?" ରାଜା ଆର୍ତ୍ତନାଦ କରି ଉଠିଲେ ।

"ଚଣ୍ଡ ପ୍ରଚଣ୍ଡ ମହାରାଜ ! ଏକ ସପ୍ତାହରୁ ଏକ ନିମେଷ କମ୍ ହେଲେ ବି ଚଳିବ ନାହିଁ ।" ଯାଦୁକର ନିର୍ମମ କଣ୍ଠରେ କହିଲା ।

"ଆମେ ପ୍ରତ୍ୟହ ସକାଳେ ମାତ୍ର ଦଶ ବାରଟି ଲଡୁ ଚଟାପଟ ପାଟିରେ ପକାଇ ଦେଲେ ଚଳିବ, ନା କ'ଣ ?" ରାଜା ତାଙ୍କ ଉପରେ ହଠାତ୍ ମୁରବି ବନିଯାଇଥିବା ଯାଦୁକର ହୃଦୟରେ କରୁଣା ଉଦ୍ରେକ କରିବାର ଚେଷ୍ଟା କଲେ ।

"ନା, ଚଳିବ ନାହିଁ ।"

ରାଜା ତାଙ୍କର ଅସମାପ୍ତ ନୈଶାହାର ଆଡ଼େ ସତୃଷ୍ଣ ନୟନରେ ଚାହିଁ ରହିଲେ ।

"ଯାଦୁକର ମହାଶୟ, ଦୈନିକ ଗୋଟାଏ ଅଧେ ମୁର୍‌ଗୀ ଖାଇଲେ କ୍ଷତି ହେବନାହିଁ!"

"ନା, ମହାରାଜ! ମୁର୍‌ଗୀ ତ ଦୂରର କଥା, ଅଣ୍ଡା ବି ଚଳିବ ନାହିଁ।"

ରାଜାଙ୍କ ମୁହଁ ବଡ଼ ବିକଳ ଦେଖାଗଲା। ବଡ଼ ସହୃଦୟ ହସ ହସି ଯାଦୁକର କହିଲା, "ମହାରାଜ! ସେଦିନର କଳ୍ପନା କରନ୍ତୁ— ଯେଉଁଦିନ ଜୀବନ୍ୟାସ ପାଇଥିବା ଏ ପକ୍ଷୀ ଗହଣରେ ବସି ଆପଣ ମୁର୍‌ଗୀ ପରେ ମୁର୍‌ଗୀ, ଥାଳି ପରେ ଥାଳି ଲଡ଼ୁ ଆହାର କରୁଥିବେ! ମନେ ରଖନ୍ତୁ ସାତଦିନ ଉପବାସ କରିଥିବା ଏକମାତ୍ର ରାଜା ରୂପେ, ପୁଣି ଜଣେ ପକ୍ଷୀକୁ ବଶ ହୋଇଥିବା ଏକମାତ୍ର ରାଜା ରୂପେ ଇତିହାସରେ ଆପଣଙ୍କ ନାମ ଅମର ରହିବ।"

"ଭୂଗୋଳରେ ମଧ୍ୟ!" ଜଣେ ଅମାତ୍ୟ କହିଲେ।

ଯାଦୁକର ରାଜାଙ୍କ ପିଠି ଥାପୁଡ଼ାଇ ଦେଲା। ଗୁହଁ ଗୁହଁ ତା'ର ପ୍ରଭାବ ବଢି ଯାଉଥିଲା।

"ମୁଁ ନିଜେ ଆପଣଙ୍କ ସହ ଉପବାସ କରିବି, ଏହା ମୋର ଇଚ୍ଛା..."

ଯାଦୁକର ମୁହଁରୁ କଥା ଛଡ଼ାଇନେଇ ମନ୍ତ୍ରୀ ଓ ଅମାତ୍ୟମାନେ ସମସ୍ୱରରେ କହିଲେ, "କାହାର ଇଚ୍ଛା ନୁହେଁ? ଆମେ ସମସ୍ତେ ଉପବାସ କରିବୁଁ।" ଭଲ କଥା। ଚଣ୍ଡ ପ୍ରଚଣ୍ଡ ମହାରାଜ ଉପବାସ ରହୁଥିବା ବେଳେ ଖଣ୍ଡିଏ ଚିଙ୍ଗୁଡ଼ି ପାଟିରେ ପକାଇବା ପାଇଁ ବି କାହାର ଭଲ ମନ ହେବ? ମୁଁ କ'ଣ କହୁଥିଲି କି, ମୋର ବି ଉପବାସ କରିବାକୁ ଇଚ୍ଛା, କିନ୍ତୁ ମୋତେ ବହୁତ ଖଟିବାକୁ ହେବ। ମୁଁ ଦୁର୍ବଳ ହେଲେ ଚଳିବ ନାହିଁ। ବସ୍ତୁତଃ, ମୋତେ ଯେତେଦୂର ସମ୍ଭବ ଭଲ ଖାଇବାକୁ ହେବ। ରାଜାଙ୍କର ଯାହା ଆହାର, ସେଥିରେ ମୋର ଚଳିଯିବ। ନହେଲେ ପ୍ରତିମା ଜୀବନ୍ୟାସ ପାଇବା ସହଜ ହେବ ନାହିଁ। ଯାଦୁକର କହିଲା।

"ତାହାହିଁ ହେଉ, ଯାଦୁକର ମହାଶୟ!" ରାଜା ବିକଳ କଣ୍ଠରେ କହିଲେ। (କ୍ରମଶଃ)





# ସୁନା ହଂସ

ନିଶା ଗରଜୁଥାଏ । ଭୁହାକୁ ଭୁହା ଶୀତଳ ପବନ ସାଙ୍ଗକୁ ଝିପି ଝିପି ବର୍ଷା ହେଉଥାଏ । ଘଡ଼ଘଡ଼ି ଓ ଶ୍ୱାନଶ୍ୱାପଦଙ୍କ ରଡ଼ି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ବି ଭୟଭୀତ ନହୋଇ ପୁନର୍ବାର ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ସେ ଯେତେବେଳେ ସେ ଶୂନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କଲେ, ଶବସ୍ଥିତ ବେତାଳ ତାଙ୍କୁ କହିଲା, "ରାଜା ! ତୁମେ କି ଧରଣର ସୁନା ମିରିଗ ପଛରେ ଧାଉଁଛ ? ଥରେ ଥରେ ସମ୍ପଦ ହାତ ଭିତରକୁ ଆସିଗଲେ ମଧ୍ୟ ଫଳ ହୁଏ ବିପରୀତ । ଗୋଟାଏ ଦୃଷ୍ଟାନ୍ତ ଦେଉଛି । ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

## ବେତାଳ କଥା



ବେତାଳ ଗପିଲା : ଅନେକ ଦିନ ତଳର କଥା । ଗୋଟିଏ ଜଙ୍ଗଲ ପାଖରେ ଘର କରି ରହୁଥାଏ ଜଣେ ଶିକାରୀ । ସେ ଜଙ୍ଗଲରେ ପଶୁପକ୍ଷୀଙ୍କର ଅଭାବ ନଥାଏ । କିନ୍ତୁ ଦିନେ ଏମିତି ଯୋଗ ପଡ଼ିଲା ଯେ ବହୁତ ସମୟ ବଣରେ ବୁଲି ବୁଲି ମଧ୍ୟ ଶିକାରୀ ଗୋଟାଏ ବି ଶିକାର ପାଇଲା ନାହିଁ ।

ହଠାତ୍ ତା' ଆଖିରେ ପଡ଼ିଲା ଗୋଟିଏ ଅପୂର୍ବ ହଂସ । ସେ ପକ୍ଷୀ ଉଡ଼ିଗଲା ବେଳେ ଆଖି ଝଲସାଇ ଦେଉଥାଏ ।

ଶିକାରୀ ଲକ୍ଷ୍ୟ କରି ଦେଖିଲା, ଯେ ହଂସର ବର୍ଣ୍ଣ ଧଳା ନୁହେଁ, ସୁବର୍ଣ୍ଣ । ସେ ତତ୍କ୍ଷଣାତ୍ ତାକୁ ଲକ୍ଷ୍ୟ କରି ଶର ଛାଡ଼ିଲା ।

ଅବ୍ୟର୍ଥ ଶର ଯାଇ ହଂସ ଦେହ ଭେଦ କଲା । କିନ୍ତୁ ଆଶ୍ଚର୍ଯ୍ୟର କଥା, ଶର ତା' ଦେହ ଭେଦି ବାହାରି ଚାଲିଯିବା ସତ୍ତ୍ୱେ ହଂସର ଗତିରେ ସାମାନ୍ୟ ବ୍ୟତିକ୍ରମ ମଧ୍ୟ ହେଲା ନାହିଁ । ସେ ଯଥାରୀତି ଉଡ଼ି ଚାଲିଗଲା । ତେବେ, ତା'ର ଖଣ୍ଡିଏ ଶ୍ରେଷ୍ଠ ପକ୍ଷ ତଳେ ପଡ଼ିଲା ।

ଶିକାରୀ ପକ୍ଷଟିକୁ ଉଠାଇ ନେଇ ଦେଖିଲା, ତାହା ସୁନା ଭଳି ଚକ୍ ମକ୍ କରୁଛି । ସେ ତାକୁ ଧରି ଠିଆ ହୋଇଥାଏ, ଜଣେ ବୁଢ଼ା ଅନ୍ୟ ଦିଗରୁ ଆସି ପଚାରିଲା, "କିହୋ, କ'ଣ ଦେଖୁଛ ?"

"ଏଇ ପକ୍ଷ ଗୋଟିଏ ହଂସ ଦେହରୁ ଖସି ପଡ଼ିଲା । କିନ୍ତୁ ଏହା ସୁନା ଭଳି ଦିଶୁଛି ।"

ଶିକାରୀ ପାଖରୁ ପକ୍ଷଟିକୁ ନେଇ ବୁଢ଼ା ଦେଖିଲା ଓ କହିଲା, "ଉଡ଼ନ୍ତା ହଂସ ଦେହରୁ ଖସି ପଡ଼ିଲା ? ଏହାତ ଖାଣ୍ଟି ସୁନା !"

"ତା'ହେଲେ ସେ ହଂସ ଅପୂର୍ବ । ସେ ଏଇ ଦିଗରେ ଯାଇଛି । କେଉଁଠାରେ ହେଲେ ଓହ୍ଲାଇବ । ତମେ ଯଦି ମୋ ସାଙ୍ଗରେ ଯିବ, ତେବେ ତାକୁ ଠାବ କରିବା ।" ଶିକାରୀ କହିଲା ।

"ଚାଲ, ଚାଲ, ଶୀଘ୍ର ଚାଲ ।" ବୁଢ଼ା କହିଲା । ଦୁହେଁ ଦୌଡ଼ିଲେ । ବଣ ଭିତରେ କ୍ଷିପ୍ର ଗତିରେ ଯିବା ସହଜ ନୁହେଁ । ସେମାନେ ଥକିଯିବା ବେଳକୁ ବୁଢ଼ା ତା' ନିଜ ଗପ ଗପିଲା । ତା' ବାପା ଥିଲେ ଜଣେ ବଡ଼ ଜମିଦାର । ସେ ଜମିଦାରିରୁ ଯାହା ଆୟ

କରୁଥିଲେ, ତାକୁ ସୁନାରେ ପରିଣତ କରି ସେ ସଞ୍ଚୟ କରି ରଖୁଥିଲେ । ଜୀବନ ଯାକ ସେ ସଞ୍ଚିଥିଲେ ଅନେକ ସୁନା । କିନ୍ତୁ ସେସବୁ ସେ କୌଣସି ଗୋପନ ସ୍ଥାନରେ ପୋତି ରଖିଥିଲେ ।

ହଠାତ୍ ସେ ବେମାର ପଡିଲେ । ସେତେବେଳେ ତାଙ୍କ ପୁଅ ଅତି ସାନ । "ମୋ ମୃତ୍ୟୁ ହୋଇଗଲେ ପୁଅ ସୁନାର ସନ୍ଧାନ ପାଇବ କିପରି ? ସୁନାର ତେବେ କ'ଣ ହେବ ?" ସେ ଏହି ଚିନ୍ତାରେ ଦଗ୍ଧ ହେଉଥାନ୍ତି । ସ୍ତ୍ରୀଙ୍କୁ ସୁନା ରହସ୍ୟ କହିବାକୁ ସେ ପ୍ରସ୍ତୁତ ନଥିଲେ । ତାଙ୍କ ସ୍ତ୍ରୀ ଏତେ ସରଳ ଯେ ଅନିଚ୍ଛାରେ ତାଙ୍କଠୁଁ ଅନ୍ୟମାନେ ସେ ରହସ୍ୟ ଜାଣି ନେଇପାରନ୍ତେ ।



ଅନେକ ଚିନ୍ତା କରି ଜମିଦାର ଖଣ୍ଡିଏ ତମ୍ବା ପଟାରେ ସାଙ୍କେତିକ ଭାଷାରେ ପୋତା ଧନର ଠିକଣା ଲେଖିଲେ । କଥା ରହିଲା, ପୁଅ ବଡ ହେବା ପରେ ତାଙ୍କ ସ୍ତ୍ରୀ ସେ ତମ୍ବା ପଟା ପୁଅକୁ ଦେବେ । ଏହାପରେ ଜମିଦାରଙ୍କର ମୃତ୍ୟୁ ହେଲା । କିନ୍ତୁ ଦୁର୍ଭାଗ୍ୟକୁ ଥରେ ଗୋଟାଏ ବଖରାରେ ନିଆଁ ଲାଗିଗଲା । ସେ ତମ୍ବା-ପଟାଟି ତରଳିଗଲା । ସୁନା-ରହସ୍ୟ ଜାଣିବାର ଆଉ ଉପାୟ ରହିଲା ନାହିଁ !

ସେହି ଦୁଃଖରେ ଜମିଦାରଙ୍କ ସ୍ତ୍ରୀ ବି ମରିଗଲେ । ପୁଅ ବଡ଼ ହେଲା ଓ କ୍ରମେ ବୁଢ଼ା ହେଲା । ଜମିଦାରି ଗଲା । ସୁନାର ସନ୍ଧାନରେ ବୁଢ଼ା ଇତସ୍ତତଃ ବୁଲୁଛି । ବାପା କାଳେ ବଣରେ ଲୁଚାଇ ରଖିଥିବେ କି ?

ଶିକାରୀ ଓ ବୁଢ଼ାଙ୍କ ଆଖିରେ ଅଳ୍ପ ସମୟ ପରେ ଗୋଟାଏ ଅଦ୍ଭୁତ ଦୃଶ୍ୟ ପଡିଲା । ଗୋଟାଏ ଗଛ ମୂଳରେ ନିଆଁ ଜଳୁଥାଏ । ଗଛ ଡାଳରୁ ମୁଣ୍ଡ ତଳକୁ କରି ସେହି ନିଆଁ ଉପରେ ଝୁଲିବା ଅବସ୍ଥାରେ ଜଣେ ସାଧୁ ମନ୍ତ୍ରୋଚ୍ଚାରଣ କରୁଥାନ୍ତି ।

"ଆରେ, ଆରେ, ତମକୁ ଉତ୍ତାପ ଲାଗୁନାହିଁ ?" ଶିକାରୀ ପଚାରିଲା ।

ସାଧୁ ସଙ୍ଗେ ସଙ୍ଗେ ନିଆଁ ବାହାରକୁ ଡେଇଁ ପଡି ରାଗିଯାଇ କହିଲେ, "ହଇରେ ଦୁଷ୍ଟ ! ମୁଁ ଆଉ ଟିକିଏ ସମୟ ପରେ ସିଦ୍ଧି ଲାଭ କରିଥାନ୍ତି । ତୋତେ ଆସି ତମ୍ଭା ଭଲମନ୍ଦ ବୁଝିବାକୁ କିଏ କହିଲା ?"



"ତମକୁ କିଏ ଅଭିଶାପ ଦେଇ ଏମିତି ଦଣ୍ଡ ଦେଉଛି ନା ତମେ ସ୍ୱଇଚ୍ଛାରେ ଏମିତି ଦଣ୍ଡ ପାଉଛ, ସେତକ ଠଉରାଇ ପାରିଲି ନାହିଁ । କିନ୍ତୁ ତମେ କି ସିଦ୍ଧି ପାଇଁ ଚେଷ୍ଟା କରୁଥିଲ ?" ଶିକାକ୍ଷି ପଚାରିଲା ।

"ସୁନା ପାଇଁ । ମୋ ବାପା ଥିଲେ ରାଜାଙ୍କ ଗନ୍ତାଘରିଆ । ଥରେ ଗନ୍ତାଘରୁ କିଛି ସୁନା ଚୋରି ଗଲା । ରାଜା କିଛି ନ ବୁଝି ମୋ ବାପାଙ୍କୁ ସନ୍ଦେହ କଲେ ଓ ଅପମାନ ଦେଲେ । ମୋ ବାପା ଦୁଃଖରେ ଆତ୍ମହତ୍ୟା କଲେ । ତା'ପରେ ଅସଲ ଚୋର ଧରା ପଡ଼ିଲା, କିନ୍ତୁ ରାଜା ଏଡେ ନରାଧମ ଯେ ସେ ତାଙ୍କ ପୂର୍ବ ସନ୍ଦେହ ସକାଶେ ଥରେ ଅନୁତାପ ବି କଲେ ନାହିଁ । ମୁଁ ପ୍ରଚୁର ସୁନା ପାଇଲେ ସୈନ୍ୟଦଳ ଗଢିବି । ରାଜାଙ୍କୁ ହଟାଇ ନିଜେ ରାଜା ହେବି ।" ସାଧୁ-ବେଶୀ ଲୋକ ତାଁ' ନିଜ କଥା ବଖାଣି କଲା ।

"ତା ହେଲେ ତମେ ଆମ ସହ ଆସ । ଆମେ ସୁନା ହଂସର ସନ୍ଧାନରେ ବାହାରିଛୁଁ ।" ବୁଢ଼ା କହିଲା ।

"ସତେ ? ଏ ବଣ ଭିତରେ କୌଣସି ଅଜ୍ଞାତ ସ୍ଥାନରେ ଗୋଟାଏ ସରୋବରରେ ସୁନା-ହଂସମାନେ ଥାଆନ୍ତି ବୋଲି ମୁଁ ଶୁଣିଛି । କିନ୍ତୁ ଦେଖି ନାହିଁ ।" ସାଧୁବେଶୀ କହିଲା ।

"ମୁଁ ଗୋଟିଏ ସୁନା ହଂସ ଦେଖିଛି ।" ଶିକାକ୍ଷି କହିଲା ।

"ଯଦି ଗୋଟିଏ ଦେଖିଛ, ତେବେ ବହୁତ ଅଛନ୍ତି । ହଂସମାନେ ଏକୁଟିଆ ରହନ୍ତି ନାହିଁ ।" ଏହା କହି ସାଧୁବେଶୀ ସେ ଦୁହିଙ୍କ ସହ ଯୋଗ ଦେଲା । କିଛି ବାଟ ଯିବା ଉତ୍ତାରୁ ସେମାନେ ଗୋଟାଏ ଘର ଦେଖିଲେ । ଘର ଭିତରକୁ ଉଙ୍କି ମାରି ସେମାନେ ଯାହା ଦେଖିଲେ, ସେଥିରେ ଆତଙ୍କ ଅନୁଭବ କରିବା କଥା । ଜଣେ ହୃଷ୍ଟପୁଷ୍ଟ ଲୋକ ବସି ମନ୍ତ୍ର ପଢିବା ସଙ୍ଗେ ସଙ୍ଗେ ଖଡ୍‌ଗ ପଜାଉଛି । ବାଳକଟିଏ ଗୋଟିଏ ମୂର୍ତ୍ତି ଆଗରେ ଠିଆ ହୋଇଛି ।

ସାଧୁ-ବେଶୀ ତା'ର ଅନ୍ୟ ଦୁଇ ସହଚରଙ୍କୁ ଚୁପି ଚୁପି କହିଲା, "ଏ ମନ୍ତ୍ର ବଳିଦେବା ପୂର୍ବରୁ ତାନ୍ତ୍ରିକମାନେ ପଢ଼ନ୍ତି । ଏହାର ଅର୍ଥ ଏ ଲୋକ ଏ ପିଲାକୁ ବଳିଦେବ ।"

ଏହାପରେ ନିଜ ନିଜ ଭିତରେ ମନ୍ତ୍ରଣା କରି "ଖବରଦାର୍ !" ବୋଲି ଚିତ୍କାର କରି ତିନିହେଁ ଘର ଭିତରକୁ ମାଡ଼ିଗଲେ ।

ହୃଷ୍ଟପୁଷ୍ଟ ଲୋକଟି ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ କ୍ରୁଦ୍ଧ ହୋଇ କହିଲା, "ତମେମାନେ କିଏ ? କାହିଁକି ମୋ କାମରେ ବାଧା ଦେଲ ? ବର୍ତ୍ତମାନ ହିଁ ଶୁଭ ମୁହୂର୍ତ୍ତ ଚାଲିଯାଉଛି !"

"ତମ କାମ ବୋଇଲେ ଏ ସୁକୁମାର ଶିଶୁର ହତ୍ୟା ତ ? କାହିଁକି ତମେ ସେ ପାପ କରିବାକୁ ଚାହୁଁଥିଲ ?" ଶିକାଷ୍ଠି ପଚାରିଲା ।

"ମୋର ଗୋଟାଏ ପୁଅ ବେମାର ପଡ଼ିଲା । ପଇସା ଅଭାବରୁ ତା' ଚିକିତ୍ସା କରିପାରିଲି ନାହିଁ । ସେ ମଲା । ଜଣେ ତାନ୍ତ୍ରିକ ମୋତେ ଗୋଟାଏ ମନ୍ତ୍ର ଶିଖାଇ ଦେଇଛି । ସେ ମନ୍ତ୍ର ପଢ଼ି ଏ ପିଲାକୁ ବଳି ଦେଇଥିଲେ ଏ ଘର ଭିତରେ ସୁନା ବର୍ଷା ହୋଇଥାନ୍ତା ।" ଲୋକଟି କହିଲା ।

"ଏ ପିଲା କିଏ ?" ଚଗୁରିଲା ଶିକାଷ୍ଠି ।

"ମୋ ପୁଅ !"

"ତମେ କେଡ଼େ ମୂର୍ଖ ! ଗୋଟାଏ ପୁଅକୁ ବଞ୍ଚାଇପାରିଲ ନାହିଁ ବୋଲି ଆଉ ଗୋଟାଏ ପୁଅକୁ ମାରିଦେବାକୁ ବସିଛ ?" ଶିକାଷ୍ଠି ଓ ଅନ୍ୟ ଦୁଇଜଣ ଏକା ସାଙ୍ଗରେ କହିଲେ ।

ସେ ଲୋକ ନିଜ ମୂର୍ଖତା ବିଷୟରେ ଚେତି ଉଠି ବଲ ବଲ ଅନାଇ ରହିଲା ।

"ତମର ଯଦି ସୁନା ଦରକାର, ଆମ ସହ ଆସ ।" କହିଲା ସାଧୁ-ବେଶୀ । ସୁନା ହଂସ କଥା ଶୁଣି ଲୋକଟି ସେମାନଙ୍କ ସହ ଚାଲିଲା ।



ଅନେକ ସମୟ ବାଟ ଚାଲିବା ପରେ ସେମାନେ ଦେଖିଲେ, ଦଳେ ସୁନା ହଂସ ଗୋଟିଏ ପାହାଡ଼ ସେପଟେ ଅବତରଣ କରୁଛନ୍ତି । ସେମାନେ ସେହି ଦିଗକୁ ଚାଲିଲେ । ସନ୍ଧ୍ୟା ହୋଇ ଆସୁଥାଏ । ଦେଖିବା ବେଳକୁ ପାହାଡ଼ ସେପଟେ ମନୋରମ ସରୋବର । ତହିଁ ଭିତରେ ଖେଳି ବୁଲୁଛନ୍ତି ଦଳେ ସୁନା ହଂସ । ସରୋବରର ଅନ୍ୟ ଏକ ପ୍ରାନ୍ତରେ ଫୁଟିଛି ଅନେକ ସୁନା ପଦ୍ମ ।

ସମସ୍ତେ ସଙ୍ଗେ ସଙ୍ଗେ ସରୋବର ଭିତରକୁ ଡେଇଁ ପଡ଼ିଲେ । ଶିକାଷ୍ଠି ସେ ହଂସମାନଙ୍କ

ହଟରୁ ଗୋଟାକୁ ଧରିବାକୁ ଚେଷ୍ଟା କଲା । କିନ୍ତୁ ହଂସମାନେ ଏତେ ଦୂରକୁ ଚାଲିଗଲେ ଯେ ସେ ବାଧ୍ୟ ହୋଇ କୂଳକୁ ଫେରିଲା ।

ଫେରିବାବେଳକୁ ସେ ତା'ର ସହଯାତ୍ରୀମାନଙ୍କୁ ଦେଖି ପାରିଲା ନାହିଁ । କିନ୍ତୁ ସୁନା ପଦ୍ମ ଫୁଟିଥିବା ସ୍ଥାନରୁ ତିନୋଟି ସୁନାହଂସ ତା' ଆଡ଼କୁ ପହଁରି ଆସିଲେ । ସତେ ଅବା ସେଗୁଡ଼ିକ ତାକୁ କିଛି କହିବାକୁ ଚାହୁଁଥିଲେ !

ଶିକାରୀ ଶୁନ୍‌ଆ ହୋଇ ତରବରରେ କୂଳକୁ ଉଠି ଆସି ଘର ମୁହଁ ଦୌଡ଼ିଲା ।

ବେତାଳ ଟିକିଏ ଚୁପ୍ ରହି କଣ୍ଠସ୍ୱର ତୀବ୍ର କରି ରାଜା ବିକ୍ରମଙ୍କୁ ପଚାରିଲା, "ରାଜା ! ସେ ତିନିଜଣ ଗଲେ କୁଆଡ଼େ ? ସେମାନେ ଯଦି ଅଦୃଶ୍ୟ ହୋଇଗଲେ, ଶିକାରୀ ବଞ୍ଚିଗଲା କପରି ? ତିନୋଟି ସୁନା ହଂସ ତା' ଆଡ଼େ ଆସିବାର ଦେଖି ମଧ୍ୟ ସେ ସେମାନଙ୍କୁ ନ ଧରି ପୁଣି ଶୁନ୍‌ଆ ହୋଇ ପଳାଇ ଆସିଲା କାହିଁକି ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଜାଣିଥିବା ସତ୍ତ୍ୱେ ଯଦି ନିରୁତ୍ତର ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ଶିକାରୀ ତା' ଧର୍ମ ଓ ଅଭ୍ୟାସ ଅନୁସାରେ ହଂସ ଧରିବାକୁ ଉଦ୍ୟତ ହେଲା । କିନ୍ତୁ ଅନ୍ୟ ତିନିଜଣ ସେଠାକୁ ଯାଇଥିଲେ ସୁନା ଲୋଭରେ । ସେମାନେ ସୁନା ପଦ୍ମ ତୋଳିବାକୁ ଚାଲିଗଲେ । କହିବା ବାହୁଲ୍ୟ, ସେ ସରୋବର ଏକ ଯାଦୁ ସରୋବର । ଯିଏ ସୁନା ପଦ୍ମ ତୋଳିବାକୁ ଯିବ, ସେ ସୁନା ହଂସ ହୋଇଯିବ । ସହଯାତ୍ରୀମାନଙ୍କର ସେହି ଅବସ୍ଥା ହୋଇଛି ଜାଣି ଶୁନ୍‌ଆରେ ଶିକାରୀ ପଳାଇ ଆସିଲା । ସେ କଦାପି ସୁନାହଂସ ହେବାକୁ ମନ କରିନ୍ତା ନାହିଁ ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)





# ଓସ୍ତାଦ ପୂଜକ!

ପ୍ରାଚୀନ କାଳର କଥା । ମଗଧ ରାଜ୍ୟରେ ସେତେବେଳେ ବିଷ୍ଣୁଭକ୍ତ ଓ ଶିବଭକ୍ତଙ୍କ ଭିତରେ ସର୍ବଦା ବିବାଦ ଲାଗି ରହୁଥାଏ । ରାଜା ଉଭୟ ଭକ୍ତ ଗୋଷ୍ଠୀଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଦୁଇଟି ସୁନ୍ଦର ମନ୍ଦିର ନିର୍ମାଣ କଲେ ।

ରାଜା ମନ୍ତ୍ରୀଙ୍କୁ ପଚାରିଲେ, "ମନ୍ଦିର ତ ହୋଇଗଲା, ବର୍ତ୍ତମାନ ଦୁଇ ମନ୍ଦିରର ଦୁଇ ପୂଜକଙ୍କ ଭିତରେ ଯଦି ବିବାଦ ଲାଗିବ, ତେବେ ଆମର ଉଦ୍ଦେଶ୍ୟ ପଣ୍ଡ ହେବ । ଏ ଦିଗରେ କ'ଣ କରାଯାଇ ପାରେ ?"

"ମହାରାଜ, ଉଭୟ ମନ୍ଦିର ପାଇଁ ଜଣେ ମୁଖ୍ୟ ପୂଜକ ରହିଲେ କ୍ଷତି କ'ଣ ? ଯେଉଁ ବ୍ରାହ୍ମଣ ଶିବ ପୂଜା କରିବ, ସେ ବ୍ରାହ୍ମଣ ବିଷ୍ଣୁ ପୂଜା ବି କରି ପାରିବ । କାରଣ ଭଗବାନ ଏକ ଓ ଯେଉଁମାନେ ସତରେ ବେଦ ଅଧ୍ୟୟନ କରିଛନ୍ତି, ସେମାନଙ୍କ ଭିତରେ ଭଗବାନଙ୍କ ଭିନ୍ନ ଭିନ୍ନ ରୂପକୁ ନେଇ କୌଣସି ବିବାଦ ନାହିଁ । ବିବାଦର ଜନ୍ମ ଅଜ୍ଞାନ ଭିତରୁ ।" ମନ୍ତ୍ରୀ କହିଲେ ।

"କିନ୍ତୁ ସେଭଳି ଯୋଗ୍ୟ ପୂଜକ ଅଛନ୍ତି କି ?" ରାଜା ପଚାରିଲେ ।

"ଅଛନ୍ତି ମହାରାଜ ! ସେ ବ୍ୟକ୍ତି ଖାଲି ଯୋଗ୍ୟ ପୂଜକ ନୁହନ୍ତି, ଜଣେ ସୁଦକ୍ଷ ଓ ବୁଦ୍ଧିମାନ ସଂଗଠକ । ସେ ଭକ୍ତମାନଙ୍କଠୁଁ ପ୍ରଚୁର ଚାନ୍ଦା ଉଠାଇବେ ଓ ସେଥିରେ ନାନା ଜନହିତକର କାର୍ଯ୍ୟ ହୋଇପାରିବ । ସେ ହେଲେ ଶିବରାମ ଯୋଶୀ ।" ମନ୍ତ୍ରୀ କହିଲେ ।

ରାଜା ମନ୍ତ୍ରୀଙ୍କ ପ୍ରସ୍ତାବ ଗ୍ରହଣ କରି ଶିବରାମ ଯୋଶୀଙ୍କୁ ଉଭୟ ମନ୍ଦିରର ମୁଖ୍ୟ ପୂଜକ ତଥା ତତ୍ତ୍ୱାବଧାରକ ନିଯୁକ୍ତ କଲେ । ତାଙ୍କ ଅଧୀନରେ ରହିଲେ ଅନ୍ୟାନ୍ୟ ପୂଜକ । ଦେଖାଗଲା, ବର୍ଷକ ଭିତରେ ମନ୍ଦିରର ଏତେ ଆୟ ହେଲା ଯେ ଯୋଡ଼ଏ ଛନୋଟି ଅନୁଷ୍ଠାନ ଖୋଲା ହୋଇଗଲା ।

'ଏକ'ର ମହିମା

ରାଜା କୌତୁହଳୀ ହୋଇ ଏବେ ଜଣେ ବେପାରୀ ବେଶରେ ଯାଇ ଦୁଇ ମନ୍ଦିର ମଝିରେ ଥିବା ସରୋବର କଡ଼ରେ ପହଞ୍ଚିଲେ । ସେଠାରେ ଗୋଟାଏ ବିଶ୍ରାମ ଗୃହ ଥିଲା । ସେଠି ଅନେକ ଭକ୍ତ ବିଶ୍ରାମ କରୁଥିଲେ । ରାଜା ସେମାନଙ୍କ ଭିତରେ ବସିଲେ । କିଛି ସମୟ ପରେ ଶିବରାମ ଯୋଶୀ ଆସି ଭକ୍ତମାନଙ୍କ ସହ କଥାବାର୍ତ୍ତା କଲେ । ରାଜା ତାଙ୍କ କଥାବାର୍ତ୍ତାରେ ମୁଗ୍ଧ ହେଲେ । ରାଜା ଛଦ୍ମବେଶରେ ଥିବା ସତ୍ତ୍ୱେ ତାଙ୍କ ଅଙ୍ଗୁଳିରେ ଥିବା ମୂଲ୍ୟବାନ ମୁଦି ଦେଖି ଯୋଶୀ ବୁଝିନେଲେ ଯେ ସେ ଜଣେ ବିତ୍ତବାନ ବ୍ୟକ୍ତି । ଯୋଶୀ ତାଙ୍କୁ ଉଭୟ ମନ୍ଦିର ବୁଲାଇ ଦେଖାଇଲେ । ରାଜା ଖଣ୍ଡିଏ କାଗଜରେ ୧୦୦ ଲେଖି ଯୋଶୀଙ୍କୁ କହିଲେ, "ମୁଁ ଏତିକି ମୁଦ୍ରା ପ୍ରଣାମୀ ଦେବାକୁ ଚାହେଁ । ଠିକ୍ ଅଛି ତ ?"

ଯୋଶୀ କହିଲେ, "ନିଶ୍ଚୟ ! ଯିଏ ଯାହା ଦାନ ଦେବ, ତାହା ତା'ର ବ୍ୟକ୍ତିଗତ କଥା । ତେବେ ଆପଣ ଯେତେବେଳେ ମୋତେ ପଚାରୁଛନ୍ତି, ମୁଁ କହିବି, ଆପଣ ମାତ୍ର ଗୋଟିଏ '୧' ଯୋଗ କରନ୍ତୁ ।

ରାଜା ହସି ହସି ୧୦୦ ପରେ ୧ ଯୋଗ କଲେ । ଫଳରେ ହେଲା ଏକହଜାର ଏକ ଟଙ୍କା ।

"ଏଥର ଠିକ୍ ଅଛି ?" ସେ ପଚାରିଲେ ।

ଯୋଶୀ ହସି ହସି କହିଲେ, "ଆପଣ ପୁଣି ମୋତେ ପଚାରିଲେ ? ତେବେ ତ ମୋତେ କିଛି କହିବାକୁ ହେବ । ଆପଣ ଡାହାଣ ପାଖରେ ୧ ଯୋଗ କଲେ । ଡାହାଣ ପାଖରେ ବିଷ୍ଣୁ ମନ୍ଦିର । ବାମ ପାଖରେ ଥିବା ଶିବ କ'ଣ ଭାବିବେ ? ଆପଣ ବାମ ପାଖରେ ୧ ଯୋଗ କରନ୍ତୁ ।"

ରାଜା ତାହାହିଁ କଲେ । ଏଥର ହେଲା ଏଗାର ହଜାର ଏକ ଟଙ୍କା । ସେ ହସି ହସି ବିଦାୟ ନେଇ ଆସି ମନ୍ତ୍ରୀଙ୍କୁ କହିଲେ, "ବାସ୍ତବିକ ଓସ୍ତାଦ୍ ଲୋକ ତମ ଯୋଶୀ !"





ପ୍ରାଚୀନ ସାହିତ୍ୟର କାହାଣୀ

# ମୁଦ୍ରା ରାକ୍ଷସ-୨

(କାହାଣୀ ଏପାଖରୁ) : ମଗଧର ନନ୍ଦ ରାଜା ତାଙ୍କ ବୈମାତୃକ ଭାଇ ଚନ୍ଦ୍ରଗୁପ୍ତଙ୍କୁ ଧନନ୍ଦ ପାଇଁ ମୁକ୍ତ କଲେ । ଚନ୍ଦ୍ରଗୁପ୍ତ ନଗରବାସୀଙ୍କଠାରୁ ଏତେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ପାଇଲେ ଯେ ରାଜା ଆଉ ତାଙ୍କୁ ବନ୍ଦୀ କରିବାକୁ ସାହସ କଲେ ନାହିଁ ।

ମାସିଡନର ରାଜା ଆଲେକଜାଣ୍ଡାର ସେତେବେଳେ ଦିଗ୍‌ବିଜୟ କରିବାକୁ ବାହାରି ଭାରତରେ ଛାଉଣୀ ପକାଇ ରହିଥାନ୍ତି । ଚନ୍ଦ୍ରଗୁପ୍ତ ତାଙ୍କ ସୈନ୍ୟ-ବାହିନୀରେ ଯୋଗଦେଲେ ଓ ସାମରିକ କୌଶଳ ଶିଖିଲେ । କିନ୍ତୁ ଆଲେକ୍-ଜାଣ୍ଡାରଙ୍କ ସହାୟତା କରିବା ତାଙ୍କର ଉଦ୍ଦେଶ୍ୟ ନଥିଲା ।






ଦିନେ ଚନ୍ଦ୍ରଗୁପ୍ତ ଆଲେକ୍‌ଜାଣ୍ଡାରଙ୍କ ସେନାପତିଙ୍କ ସହ କଳି କରି ତାଙ୍କୁ ଅପମାନ ଦେଲେ । ସେନାପତି ତାଙ୍କୁ ଧରିବାକୁ ଚେଷ୍ଟା କରି ପାରିଲେ ନାହିଁ । ଗ୍ରୀକ୍ ସୈନ୍ୟମାନେ ତାଙ୍କ ପଛରେ ଗୋଡ଼ାଇଲେ, କିନ୍ତୁ ଚନ୍ଦ୍ରଗୁପ୍ତ ଖସିଗଲେ ।



ତେଣେ ନଅରରେ ଗୋଟିଏ ଧର୍ମାନୁଷ୍ଠାନ ହେଉଥିବା ବେଳେ ନନ୍ଦ ରାଜା ବିଷ୍ଣୁଗୁପ୍ତ ନାମକ ଜଣେ ନିର୍ଦ୍ଦୋଷ ବ୍ରାହ୍ମଣ ପୁରୋହିତଙ୍କୁ ଅପମାନ ଦେଇଥାନ୍ତି। ବ୍ରାହ୍ମଣଙ୍କର ଏକମାତ୍ର ଅପରାଧ ଥିଲା, ସେ ରାଜକୀୟ ପୁରୋହିତ ଭଳି ନ ଦିଶି ଅତି ସାଧାରଣ ଦିଶୁଥିଲେ। ଏହି ବ୍ରାହ୍ମଣଙ୍କର ଜନପ୍ରିୟ ନାମ ଥିଲା ଚାଣକ୍ୟ।

ଚନ୍ଦ୍ରଗୁପ୍ତ ଓ ଚାଣକ୍ୟଙ୍କର ହଠାତ୍ ଭେଟ ହୋଇଗଲା। ସମାନଙ୍କର ଏହି ସାକ୍ଷାତ୍ ଭବିଷ୍ୟତରେ ଇତିହାସର ଧାରା ବଦଳାଇ ଦେଲା। ଚନ୍ଦ୍ରଗୁପ୍ତ ଯେପରି ସାହସୀ ଓ ବଳବାନ ଥିଲେ, ଚାଣକ୍ୟ ଥିଲେ ସେହିପରି ବୁଦ୍ଧିମାନ୍ ଓ ଦୃଢ଼ପ୍ରତିଜ୍ଞ। ନନ୍ଦ ରାଜାଙ୍କ ଉପରେ ପ୍ରତିଶୋଧ ନେବା ନିମନ୍ତେ ଉଭୟେ ଥିଲେ ଦୃଢ଼ ପରିକର।





ମଗଧ ସୀମାନ୍ତରେ ପର୍ବତକ ନାମକ ଜଣେ ସାମନ୍ତ ରାଜା ଥିଲେ। ସେ ଥିଲେ ବନବାସୀମାନଙ୍କ ଉପରେ ସର୍ଦ୍ଦାର। ଚାଣକ୍ୟ ତାଙ୍କୁ ମଗଧ ରାଜ୍ୟର ଅର୍ଦ୍ଧେକ ଦାନ କରିବାର ଲୋଭ ଦେଖାଇଲେ। ପର୍ବତକ ତାଙ୍କୁ ସୈନ୍ୟ ସାହାଯ୍ୟ ଦେବାକୁ ପ୍ରତିଶ୍ରୁତ ହେଲେ।

ପର୍ବତକଙ୍କ ସୈନ୍ୟବାହିନୀ ଧରି ଚନ୍ଦ୍ରଗୁପ୍ତ ନନ୍ଦ ରାଜାଙ୍କ ରାଜଧାନୀ ଆକ୍ରମଣ କଲେ । ଚାଣକ୍ୟ ଓ ଚନ୍ଦ୍ରଗୁପ୍ତ ଆକ୍ରମଣ ପରିଚାଳନା କରୁଥାନ୍ତି । ଭୀଷଣ ଯୁଦ୍ଧ ଲାଗିଗଲା । ନନ୍ଦ ରାଜା ଏପାଇଁ ପ୍ରସ୍ତୁତ ନଥିଲେ । ତାଙ୍କ ସୈନ୍ୟଦଳ ପରାଜିତ ହେଲେ ।





ରାଜା ମହାନନ୍ଦଙ୍କୁ ତାଙ୍କ ପ୍ରବୀଣ ମନ୍ତ୍ରୀ ରାକ୍ଷସ ଗୋଟିଏ ସୁଡ଼ଙ୍ଗ ଭିତରକୁ ନେଇଗଲେ । କିନ୍ତୁ ଚାଣକ୍ୟଙ୍କ ଚରମାନେ ଆଗରୁ ପ୍ରସ୍ତୁତ ଥିଲେ । ସେମାନେ ମହାନନ୍ଦଙ୍କୁ ହତ୍ୟା କଲେ । ମହାନନ୍ଦଙ୍କର ଅତ୍ୟନ୍ତ ବିଶ୍ୱସ୍ତ ମନ୍ତ୍ରୀ ରାକ୍ଷସ ଏଥିରେ ମର୍ମାହତ ହେଲେ ।

ଚନ୍ଦ୍ରଗୁପ୍ତ ମଗଧର ରାଜସିଂହାସନ ଆରୋହଣ କଲେ । ଜନସାଧାରଣ ଆନନ୍ଦିତ ହେଲେ । କାରଣ ଚନ୍ଦ୍ରଗୁପ୍ତଙ୍କ ପରିବାରର ଲୋକଙ୍କୁ ନନ୍ଦମାନେ ଛପରି କଳକଳ କରି ହତ୍ୟା କରିଥିଲେ, ଏକଥା ସମସ୍ତେ ଜାଣିଥିଲେ । ଚନ୍ଦ୍ରଗୁପ୍ତଙ୍କ ବୁଦ୍ଧି ଓ ଶକ୍ତି ସମ୍ପର୍କରେ ମଧ୍ୟ କାହାରି ସନ୍ଦେହ ନଥିଲା ।





ତେଣେ ମନ୍ତ୍ରୀ ରାକ୍ଷସ ତାଙ୍କ ପ୍ରିୟ ରାଜା ଓ ରାଜପରିବାରର ଲୋକଙ୍କ ହତ୍ୟାର ପ୍ରତିଶୋଧ ନେବାକୁ ନିଷ୍ପତ୍ତି କଲେ । ସେ ଚନ୍ଦ୍ରଗୁପ୍ତଙ୍କ ଉଆସରେ ଗୋଟିଏ ସୁନ୍ଦରୀ କନ୍ୟାକୁ ପ୍ରବେଶ କରାଇଲେ । ସେ କନ୍ୟା ସୁଯୋଗ ଦେଖି ଚନ୍ଦ୍ରଗୁପ୍ତଙ୍କୁ ବିଷ ଦେବ, ଏହାହିଁ ଥିଲା ଯୋଜନା ।

କିନ୍ତୁ ଚାଣକ୍ୟଙ୍କ ପ୍ରଖର ଦୃଷ୍ଟିରେ ସେ କନ୍ୟାର ସ୍ୱରୂପ ଧରାପଡ଼ିଗଲା । କନ୍ୟା ଚନ୍ଦ୍ରଗୁପ୍ତଙ୍କୁ ବିଷ ପାତ୍ର ପରଷି ଦେଉଥିଲା ବୋଲି ଜଣା ପଡ଼ିଗଲା । କନ୍ୟା ମୃତ୍ୟୁଦଣ୍ଡ ପାଇବା କଥା । କିନ୍ତୁ ତାକୁ ନମାରି ଚାଣକ୍ୟ ତାକୁ ପର୍ବତକଙ୍କ ନଅରରେ ରଖାଇ ଦେଲେ ।





ସେତେବେଳକୁ ପର୍ବତକ ମଗଧର ଅର୍ଦ୍ଧେକ ଦାବୀ କରୁଥିଲେ । ଏ କନ୍ୟା ଯାଇ ତାଙ୍କୁ ନାଚ ଗୀତରେ ମୁଗ୍ଧ କରି ଦିନେ ବିଷ ମିଶ୍ରିତ ପାନୀୟ ପିଆଇ ଦେଲା । ପର୍ବତକ ମଲେ । ଚନ୍ଦ୍ରଗୁପ୍ତ ନିଷ୍କଣ୍ଟକ ହେଲେ ।

(କ୍ରମଶଃ)



# ଦୁଇ ଯାତ୍ରୀ

ପଦ୍ମନାଭ ସହରରୁ ଗାଁକୁ ଫେରି ଆସୁଥାନ୍ତି ଗୋଟିଏ ବଳଦ ଗାଡ଼ିରେ। ମଝି ବାଟରେ ଜଣେ ବାଟୋଇ ଗାଡ଼ି ଅଟକାଇଲେ ଓ କହିଲେ, "ବାବୁ, ଆପଣ କ'ଣ ମୁକୁନ୍ଦପୁର ବାଟ ଦେଇ ଯିବେ ?"

"ହଁ, କାହିଁକି ?" ପଦ୍ମନାଭ ପଚାରିଲେ।

"ମୁଁ ମୁକୁନ୍ଦପୁରର ବାସିନ୍ଦା। ଆପଣ ଅନୁମତି ଦେଲେ ଆପଣଙ୍କ ସହ ଟିକିଏ ବାଟ ଗାଡ଼ିରେ ଚାଲିଯାଆନ୍ତି। ମୋତେ ବାଟ ଚାଲିବାକୁ ଭଲ ଲାଗେ। କିନ୍ତୁ ଆଜି କାହିଁକି କେଜାଣି ବଡ଼ କ୍ଳାନ୍ତ ଲାଗୁଛି।" ଭଦ୍ରଲୋକ କହିଲେ। ଭଦ୍ରଲୋକଙ୍କ ମୁହଁ ପଦ୍ମନାଭଙ୍କୁ ଚିହ୍ନା ଚିହ୍ନା ଲାଗିଲା। କିନ୍ତୁ ତାଙ୍କୁ ସେ କେଉଁଠି ଦେଖିଛନ୍ତି, ମନେ ପକାଇ ପାରିଲେ ନାହିଁ।

"ଅବଶ୍ୟ ଆପଣଙ୍କର ସାମାନ୍ୟ କିଛି ଅସୁବିଧା ଥିଲେ ମୋତେ ସାଙ୍ଗରେ ନେବା ଦରକାର ନାହିଁ। ମୁଁ ଆସ୍ତେ ଆସ୍ତେ ବାଟ ଚାଲୁଥିବି। ହୁଏତ ଆଉ କୌଣସି ଗାଡ଼ି ମଧ୍ୟ ପାଇଯିବି।" ବାଟୋଇ ପୁଣି କହିଲେ।

"ନା, ନା, ଅସୁବିଧା କିଛି ନାହିଁ। ଆପଣ ଆସିପାରନ୍ତି। ଆପଣଙ୍କ ମୁକୁନ୍ଦପୁର ମାତ୍ର ଘଣ୍ଟାଏ ଦେଢ଼ଘଣ୍ଟାର ବାଟ।" ପଦ୍ମନାଭ କହିଲେ।

କାହାରି ସହ ଗପସପ ହୋଇ ଗଲେ ଭଲ ଲାଗିବ ବୋଲି ପଦ୍ମନାଭ ଭଦ୍ରଲୋକଙ୍କ ଅନୁରୋଧ ଗ୍ରହଣ କଲେ। ଭଦ୍ରଲୋକ ଗାଡ଼ି ଭିତରକୁ ଉଠି ଆସିବା ମାତ୍ରେ ଦୁଇଜଣଙ୍କ ଭିତରେ ଗପସପ ଆରମ୍ଭ ହେଲା। ପଦ୍ମନାଭ ବୁଝିଲେ, ଭଦ୍ରଲୋକଙ୍କ ନାମ କୃଷ୍ଣଦାସ।

ବାଟରେ ଦୁଇ ତିନିଜଣ ଭିକାରି ସେମାନଙ୍କ ପାଖରେ ପଇସା ପାଇଁ ହାତ ପତାଇଲେ। ପଦ୍ମନାଭ ପ୍ରତ୍ୟେକଙ୍କୁ କିଛି କିଛି ଖୁଚୁରା ପଇସା

ଦେଲେ । କୃଷ୍ଣଦାସ କିନ୍ତୁ କାହାକୁ କିଛି ଦେବାର ଦେଖାଗଲା ନାହିଁ ।

"କିଛି କିଛି ଦାନ ଧ୍ୟାନ କରିବା ପ୍ରତ୍ୟେକ ଗୃହସ୍ଥର କର୍ତ୍ତବ୍ୟ, ନା କ'ଣ ?" ପଦ୍ମନାଭ କହିଲେ ।

"ଠିକ୍, ଠିକ୍ । ମୋଠିଁ ରେଜା ପଇସା ନାହିଁ । ସେଥିପାଇଁ ମୁଁ ଦେଇ ପାରୁନାହିଁ ।" କୃଷ୍ଣଦାସ କହିଲେ ।

ପଦ୍ମନାଭଙ୍କର କିନ୍ତୁ ଧାରଣା ହେଲା କି କୃଷ୍ଣଦାସ ବାସ୍ତବରେ କୃପଣ । ରେଜା ନଥିବା କଥା ଗୋଟାଏ ଆଳ ।

ଗାଡି ଚାଲିଥାଏ । ପଦ୍ମନାଭ ଓ କୃଷ୍ଣଦାସ ନାନା ବିଷୟରେ ଗପସପ ହେଉଥାନ୍ତି । ପଦ୍ମନାଭ ଦେଖିଲେ କୃଷ୍ଣଦାସ ବେଶ୍ ବହିପତ୍ର ପଢ଼ାପଢି କରିଥିବା ଲୋକ । ସେଭଳି ଜଣେ ସହଯାତ୍ରୀ ପାଇ ସେ ଖୁସି ହେଲେ । ବେଳ ଭଲରେ କଟୁଥାଏ ।

ହଠାତ୍ ଗୋଟାଏ ଯାଗାରେ ଶଗଡ଼ ଅଟକିଗଲା । ଗୋଟାଏ ଚକରୁ ଖଣ୍ଡିଏ କିଳା ଖସି ଯାଇଥିଲା । ଶଗଡଆ ଗାଡି ରାସ୍ତାର ଗୋଟାଏ କଡ଼ରେ ଠିଆ କରାଇ ଖଣ୍ଡିଏ କିଳାର ସନ୍ଧାନରେ ଗଲା । ଦୁଇଯାତ୍ରୀ ଗଛ ମୂଳ ଛାଇରେ ଠିଆ ହେଲେ ।

ଜଣେ ବୁଢ଼ା ଲୋକ ସେମାନଙ୍କ ପାଖକୁ ଆସି କହିଲା, "ବାବୁମାନେ, ଭୋକରେ ମୋ ପେଟ ଜଳୁଛି । ଦୁଇଦିନ ହେଲା ଖାଇନାହିଁ । କିଛି ଖାଇବାକୁ ଦେଇ ପାରିବେ ?"

ଲୋକଟିର ମୁହଁକୁ ଚାହିଁଲେ ସେ ଯେ ବାସ୍ତବିକ ଭୀଷଣ କ୍ଷୁଧାର୍ତ୍ତ ହୋଇଥିବ, ଏକଥା



ବୁଝି ହେଉଥିଲା । କୃଷ୍ଣଦାସଙ୍କର ହାତ ସଙ୍ଗେ ସଙ୍ଗେ ତାଙ୍କ କାମିଜ ମୁଣିକୁ ଚାଲିଗଲା । ସେ ଗୋଟିଏ ପୁଡ଼ିଆ ବାହାର କରି ତା' ହାତରେ ଦେଲେ ଓ କହିଲେ, "ଏଥିରେ କିଛି କାଜୁ ବାଦାମ ଓ କିସ୍‌ମିସ୍ ଅଛି । ଏହାକୁ ଖାଇଦିଅ ଏବଂ ତାପରେ ସେ କୂଅରୁ ଯାଇ ପାଣି ମୁନ୍ଦଏ ପିଇଦିଅ ।"

"ବାବୁ, କାଜୁ ବାଦାମ ଓ କିସ୍‌ମିସ୍? ତାହା ତ ବହୁତ ଦାମିକା ଜିନିଷ ! କାହିଁ କେବେ ମୋ ଟୋକା କାଳେ ଖାଇଥିଲି । କେତେବର୍ଷ ବିତିଗଲାଣି ସେତେବେଳେ ସହଜରେ ମିଳୁଥିଲା । ତା'ର ସ୍ୱାଦ ଭୁଲିଗଲିଣି ।" ବୁଢ଼ା କହିଲା ।

ବୁଢ଼ା ପୁଡ଼ିଆ ଖୋଲି ଭିତରକୁ ଅନାଇ ପୁଣି କହିଲା, "ବାବୁ, ଆପଣଙ୍କଠାରୁ ଏଡ଼େ ମୂଲ୍ୟବାନ ଜିନିଷ ନେଇ ନେବାକୁ ମୋର କାହିଁ ମନ କହୁନାହିଁ !"

"ଜିନିଷର ଦାମ ବିଷୟରେ ତମର ଭାବିବା ଦରକାର କ'ଣ? ପ୍ରକୃତ ମୂଲ୍ୟ ପଇସାରେ ନଥାଏ, କେଉଁ ଜିନିଷ କେତେ ଦୂର କାମ ଦେଲା, ସେହି ଅନୁସାରେ ତାର ଅସଲ ମୂଲ୍ୟ ନିରୂପଣ ହେବା ଉଚିତ । ସେ ଦୃଷ୍ଟିରୁ ମୁଁ ମାନୁଛି, ଏହା ମୂଲ୍ୟବାନ । କାରଣ ଏହା ତମ ଦରକାରରେ ଆସିଲା । ଦରକାର ବେଳେ ଯାହା କାମରେ ଆସେ, ତାହା ସବୁବେଳେ ମୂଲ୍ୟବାନ ।" କୃଷ୍ଣଦାସ କହିଲେ ।

ଲୋକଟି ତାଙ୍କୁ ନମସ୍କାର କରି ଚାଲିଗଲା ।

ଅଳ୍ପ ସମୟ ଭିତରେ ଶଗଡ଼ିଆ ଗାଡ଼ି ବି ଠିକ୍ କରିଦେଲା । ଦୁଇ ଯାତ୍ରୀ ପୁଣି ଯାତ୍ରାରମ୍ଭ କଲେ ।



ପଦ୍ମନାଭ କହିଲେ, "ବର୍ତ୍ତମାନ ମନେ ପଡ଼ିଲା । ଆପଣଙ୍କୁ ମୁଁ ଗୋଟାଏ ଦୋକାନରେ ଦେଖିଥିଲି । ଆପଣ କାଜୁ ଓ କିସ୍‌ମିସ୍ ବାଦାମ କିଣୁଥିଲେ, ମୁଁ ବି କିଣୁଥିଲି ।"

କୃଷ୍ଣଦାସ ହସି କହିଲେ, "ଠିକ୍, ମୁଁ ବି ସେତେବେଳେ ଆପଣଙ୍କୁ ଦେଖିଛି । ତେବେ ଆପଣଙ୍କୁ ଲକ୍ଷ୍ୟ କରି ନଥିଲି । ମୁଁ କାଜୁ କିଣିଥିଲି ମୋ ଝିଅ ପାଇଁ । ସେ ଅନ୍ତଃସତ୍ତ୍ୱା । ମୋ ସ୍ତ୍ରୀ କହିଥିଲେ ଝିଅ କାଜୁ ବାଦାମ ଖାଇବାକୁ ମନ କରୁଥିଲା ।" ପଦ୍ମନାଭ କିଛି କହିଲେ ନାହିଁ । କୃଷ୍ଣଦାସ ମୁକୁନ୍ଦପୁରଠିଁ ଓହ୍ଲାଇଗଲେ । ଦୁହେଁ ବନ୍ଧୁ ହୋଇଯାଇଥିଲେ । କୃଷ୍ଣଦାସ ଯେ କୃପଣ ନୁହନ୍ତି, ଏକଥା ପଦ୍ମନାଭ ବୁଝି ପାରିଥିଲେ ।

କୃଷ୍ଣଦାସ ଘରେ ପହଞ୍ଚିଲେ ଓ ଲୁଗାପଟା ବଦଳାଇଲେ । ତାଙ୍କ ସ୍ତ୍ରୀ କହିଲେ, "ଯାହା ହେଉ, ତମେ ଯେ ଝିଅ ପାଇଁ ମନେ କରି କାଜୁ ଓ କିସ୍‌ମିସ୍ ଆଣିଛ, ଏହା ଆନନ୍ଦର କଥା । ସେ ଆଜି ସକାଳେ ଖୋଜୁଥିଲା ।" ।

"ଆଣିଥିଲି ଯେ, କିନ୍ତୁ ବାଟରେ ଜଣେ ଭୋକିଲା ବୁଢ଼ାକୁ ଦେଇଦେଲି !" କୃଷ୍ଣଦାସ କହିଲେ ।

"ଦେଇ ଦେଲ ? ତେବେ ତମ କାମିଜ ମୁଣିରୁ ଏ ପୁଡ଼ିଆ ପୁଣି କେମିତି ବାହାରିଲା ?" କୃଷ୍ଣଦାସଙ୍କ ସ୍ତ୍ରୀ ଆଶ୍ଚର୍ଯ୍ୟ ହୋଇ ପଚାରିଲେ । କୃଷ୍ଣଦାସ ନିଜେ ବି କିଛି କମ୍ ଆଶ୍ଚର୍ଯ୍ୟ ହେଲେ ନାହିଁ । ଅବଶ୍ୟ ଅଳ୍ପ ସମୟ ପରେ ତାଙ୍କ ମୁହଁରେ ହସ ଫୁଟିଲା । ସେ କହିଲେ, "ବୁଝିଲି । ଯାହାଙ୍କ ଶଗଡ଼ରେ ଆସିଲି, ସେ ବି କାଜୁ ଓ କିସ୍‌ମିସ୍ କିଣିଥିଲେ । ମୋ ଝିଅ ପାଇଁ ଆଣୁଥିବା ଜିନିଷ ମୁଁ ଜଣେ ଭୋକିଲା ବୁଢ଼ାକୁ ଦେଇ ଦେବାର ଦେଖି ସେ ତାଙ୍କ ନିଜ ପୁଡ଼ିଆଟି କେତେବେଳେ ମୋ କାମିଜ ମୁଣିରେ ରଖି ଦେଇଛନ୍ତି !"

"ବାସ୍ତବିକ ଦୁନିଆରେ ମହତ୍ ଲୋକ ଅନେକ ଅଛନ୍ତି ।" ତାଙ୍କ ସ୍ତ୍ରୀ ମନ୍ତବ୍ୟ ଦେଲେ ।

"ନିଶ୍ଚୟ, ନିଶ୍ଚୟ !" କହିଲେ କୃଷ୍ଣଦାସ ।






ସେଦିନ ରାତିରେ କୃଷ୍ଣ, ବଳରାମ ଓ ଅକ୍ରୂର ଏକାଠି ବସି ଖାଇଲେ ଓ ନାନା ଗଳ୍ପ କରୁ କରୁ ପ୍ରାୟ ଅର୍ଦ୍ଧରାତ୍ରି ହୋଇଗଲା । ଅକ୍ରୂର କଥା ଛଳରେ କୃଷ୍ଣଙ୍କୁ ବୁଝାଇଲେ, "ବତ୍ସ, ତମେ ନିଜ ମା'ଙ୍କୁ ଛାଡି ଏଠାରେ ରହିଛ ଓ ଅନେକ ଅଲୌକିକ କାର୍ଯ୍ୟ କରିଛ । ଏବେ ସମୟ ଆସିଛି ନିଜ ବଂଶର ପ୍ରତିଷ୍ଠା କର । ତୁମ ମାତା ପିତା ଦୁହେଁ ଅତ୍ୟନ୍ତ ମହାନ୍ ବ୍ୟକ୍ତି । ସେମାନେ ତୁମର ବିଚ୍ଛେଦରେ ଓ ଦୁଷ୍ଟ କଂସର ଅତ୍ୟାଚାରରେ ଜୀବନ୍ମୃତ ହୋଇ ରହିଛନ୍ତି । ତୁମ ପିତା ଓ ଅନ୍ୟାନ୍ୟ ସାଧୁ ବ୍ୟକ୍ତିଙ୍କୁ କଂସ ଯେତେବେଳେ ଅପମାନ ଦିଏ ଆମେମାନେ ଭୟରେ ନୀରବ ହୋଇ ଓ ଅନ୍ତରରେ ଗଭୀର ଦୁଃଖ ନେଇ ସବୁ ସହ୍ୟ କରିଥାଉ । କଂସର କଥାକୁ ବିରୋଧ କରିବା ଅର୍ଥ ସାକ୍ଷାତ୍ ମୃତ୍ୟୁକୁ ବରଣ କରିବା । ତୁମର ମା' ମଧ୍ୟ ତୁମକୁ ଝୁରି ଝୁରି ଥରେ ମାତ୍ର ଦେଖିବା ଆଶାରେ ବଞ୍ଚି ରହିଛନ୍ତି । ଛ ପୁଅଙ୍କର ହତ୍ୟା ସହି ସହି ତାଙ୍କର ହୃଦୟ ପଥର ହୋଇ ଯାଇଛି । ଏବେ ସବୁ ଦୁଃଖ କଷ୍ଟର ଅବସାନ କରିବାର ଦାୟିତ୍ୱ ତୁମରହିଁ । ତୁମ ପରି ପୁତ୍ରକୁ ଜନ୍ମଦେଇ ବି ତୁମର ମାତାପିତା ଅକଥନୀୟ କଷ୍ଟ ଭୋଗ କରୁଛନ୍ତି; ଏବେ ସେମାନଙ୍କୁ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ସଂସାରକୁ କଂସ କବଳରୁ ଉଦ୍ଧାର କର । ଏହାହିଁ ତୁମର ବର୍ତ୍ତମାନର କର୍ତ୍ତବ୍ୟ ।"

କୃଷ୍ଣ ସବୁ ବୁଝି କେବଳ ମୃଦୁହାସ୍ୟ କରୁଥିଲେ । ରାତି ପାହି ସକାଳ ହେବା ମାତ୍ରେ

୧୦. ମଥୁରା ଯାତ୍ରା



ମଥୁରା ଯିବା ଉଦ୍ଦେଶ୍ୟରେ ରଥ ସଜ କରାହେଲା । ସେତେବେଳଯାଏ ଗୋକୁଳ ଭିତରେ କୃଷ୍ଣଙ୍କ ମଥୁରା ଯାତ୍ରା ବିଷୟରେ ବିଶେଷ ପ୍ରଚାର ହୋଇ ନଥିଲା । କୃଷ୍ଣ ବଳରାମ ଗୋକୁଳର କିଶୋର; ସେହିଠାରେ ସେମାନେ ବଡ଼ ହେବେ । ଗୋପ ଗୋପୀମାନଙ୍କ ଆଶା ଓ ଆନନ୍ଦର କାରଣ ହୋଇ ସେମାନଙ୍କ ଭିତରେ ରହିଥିବେ । କୃଷ୍ଣଙ୍କ ବଂଶୀଧ୍ୱନି ସବୁଦିନ ଗୋଧୂଳିବେଳେ, ପୁଣି ସମୟ ଅସମୟରେ ଶୁଣିବାକୁ ମିଳୁଥିବ; ସେ ବଂଶୀଧ୍ୱନିରେ କେବେ କେବେ ଗଛଲତା ପୁଲ୍ଲ କୁସୁମିତ ହୋଇ ଉଠୁଥିବେ ତ କେତେବେଳେ ଯମୁନା ଜଳରେ ସେ ଧ୍ୱନି ତରଙ୍ଗ ତୋଳୁଥିବ, କେତେବେଳେ ସେ ଧ୍ୱନିରେ ଆକାଶରେ ମେଘ ଫୋଟି ଆସୁଥିବ ଓ ମୟୁରମାନେ ପୁଚ୍ଛ ଟେକି ନାଚୁଥିବେ ତ କେତେବେଳେ ସେ ଧ୍ୱନି ଶୁଣି ଗୋପପୁରବାସୀମାନେ ଧ୍ୟାନ ମଗ୍ନ ହୋଇଯାଉଥିବେ, ଏଭଳି ଅପୂର୍ବ ସୁଯୋଗ ଓ ସୁଖ ସବୁଦିନ ସେମାନଙ୍କୁ ମିଳିବ ବୋଲି ସେମାନେ ଧରି ନେଇଥିଲେ । କୃଷ୍ଣ ବଳରାମ ମଥୁରା ଯିବାକୁ ବାହାରିଛନ୍ତି, ଏକଥା ଶୁଣି ମଧ୍ୟ ପ୍ରଥମେ କେହି କେହି ତାକୁ ବିଶ୍ୱାସ କଲେ ନାହିଁ । କିନ୍ତୁ ବେଳ ଢଳିଏ ହେବା ବେଳକୁ ଏ ବିଷୟରେ ଆଉ କାହାରି ମନରେ କୌଣସି ସନ୍ଦେହ ନଥିଲା । କୃଷ୍ଣ ଓ ବଳରାମ, ଯଶୋଦା, ରୋହିଣୀ ଓ ନନ୍ଦଙ୍କଠାରୁ ବିଦାୟ ନେଇ ଅକ୍ରୂରଙ୍କ ସହିତ ରଥରେ ବସି ମଥୁରା ଗଲେ । ଗୋପୀମାନେ ଓ ଗୋପବାଳକମାନେ ଅନେକ ଦୂର ପର୍ଯ୍ୟନ୍ତ କାନ୍ଦି କାନ୍ଦି ରଥ ପଛରେ ଦୌଡ଼ୁଥିଲେ । ସେମାନେ ନିଜ ନିଜ ଭିତରେ କୁହାକୁହି ହେଉଥିଲେ କି ଅନେକ ବିପଦରୁ କୃଷ୍ଣ ଗୋକୁଳକୁ ରକ୍ଷା କରିଛନ୍ତି । ଏବେ ତାଙ୍କର ପ୍ରିୟ କୃଷ୍ଣ ମଥୁରାକୁ ଚାଲିଯିବାରୁ ସେମାନେ ଅନାଥ ଓ ଅସହାୟ ହୋଇ କାଳ ଯାପନ କରିବେ ।

ରଥର ଗତି ବୃଦ୍ଧି ପାଇବାରୁ ସେମାନେ ଆଉ ରଥକୁ ଅଧିକ ଅନୁସରଣ କରି ନପାରି କାନ୍ଦି କାନ୍ଦି ପଛରେ ରହିଗଲେ । କୃଷ୍ଣବିହୀନ ଗୋକୁଳ ଶ୍ରୀହୀନ ଦିଶିଲା । ସମସ୍ତ ଗୋକୁଳବାସୀ କୃଷ୍ଣଙ୍କୁ ଝୁରି ଝୁରି ଖାଲି କାନ୍ଦୁଥିଲେ ।



ଏଣେ ଅକ୍ରୁର କୃଷ୍ଣ, ବଳରାମଙ୍କୁ ନେଇ ମଥୁରା ସୀମାରେ ପହଞ୍ଚିଲେ । କ୍ଳାନ୍ତ ଅକ୍ରୁର ରଥର ଗତି ବନ୍ଦ କଲେ । ଗୋଟିଏ ବୃକ୍ଷଚ୍ଛାୟାରେ ରଥ ରହିଲା । ଅକ୍ରୁର କହିଲେ, "ମୁଁ ଖୁବ୍ କ୍ଳାନ୍ତ । ତମେ ଦୁହେଁ ରଥ ଉପରେ ବସିଥାଅ । ମୁଁ ଟିକିଏ ନଦୀରେ ସ୍ନାନ କରି ଆସେ । ଘୋଡ଼ାମାନେ ମଧ୍ୟ କିଛି ସମୟ ଘାସ ଚରିବେ ।" ଘୋଡ଼ାମାନଙ୍କୁ ଫିଟାଇ ଦେଇ ଅକ୍ରୁର ସ୍ନାନ କରିବାକୁ ଗଲେ । ଥଣ୍ଡା ଯମୁନା ଜଳରେ ବୁଡ଼ି ବୁଡ଼ି ମନ ସନ୍ତୋଷରେ ସ୍ନାନ କରୁଥା'ନ୍ତି ଅକ୍ରୁର । କିନ୍ତୁ ଏ କ'ଣ ? କି ଆଲୌକିକ କଥା ? ଜଳ ଭିତରେହିଁ ବୁଡ଼ି ରହି ସେ ଦେଖିଲେ ରସାତଳ । ସେଠାରେ କର୍କୋଟକ, ବାସୁକି ଆଦି ଶ୍ରେଷ୍ଠ ନାଗମାନେ ଆତଯାତ ହେଉଛନ୍ତି । ଅତ୍ୟନ୍ତ ସୁନ୍ଦର ରତ୍ନମଣ୍ଡପ ଉପରେ ବିରାଜିତ ସହସ୍ର ଫଣାଧାରୀ ଶେଷନାଗ । ତାଙ୍କର ଦେହ ରଜତ ପରି ଧବଳ । ସେ କୁଣ୍ଡଳୀ କରି ଫଣା ଟେକି ରହିଛନ୍ତି । ତାଙ୍କର ସହସ୍ର ଫଣାରୁ ସହସ୍ର ଜିହ୍ୱା ବିଜୁଳି ଖେଳିଲା ପରି ଦେଖା ଯାଉଛନ୍ତି । ତାଙ୍କର ଦୁଇ ପାର୍ଶ୍ୱରେ ମୁଷଳ, ହଳ ଓ ତାଡ଼ବୃକ୍ଷର ପତାକା ଶୋଭା ପାଉଥିଲା । ଶେଷନାଗଙ୍କ କୁଣ୍ଡଳୀ ମଧ୍ୟରେ କମଳନେତ୍ର, ଶ୍ୟାମବର୍ଣ୍ଣ କୃଷ୍ଣ ପୀତବସନ ପରିଧାନ କରି ବିରାଜମାନ କରୁଥିଲେ ।

ପ୍ରଥମେ ଅକ୍ରୁର କିଛି ବୁଝିପାରିଲେ ନାହିଁ । ସେ କେଉଁଠାରେ ଅଛନ୍ତି ? ଏହା ସ୍ୱପ୍ନ ନା ବାସ୍ତବ ? ଜଳରାଶି ଭିତରେ କ'ଣ ହଠାତ୍ ସ୍ୱପ୍ନ ଦେଖିବା ସମ୍ଭବପର ? ତାଙ୍କର କ'ଣ ଭ୍ରମ ହେଉଛି ? ସେ ବାସ୍ତବରେ ତାଙ୍କ ଘରେ ଶୋଇ ରହି ସ୍ୱପ୍ନ ଦେଖୁ ନାହାନ୍ତି ତ ? ଅଥବା ଧ୍ୟାନରେ ବସି ଏଭଳି ଅପୂର୍ବ ଦୃଶ୍ୟ ଦେଖୁ ନାହାନ୍ତି ତ ? ତେବେ ଅଳ୍ପ ସମୟ ଭିତରେ ସେ ବୁଝିଗଲେ କି ତାଙ୍କୁ ଭଗବାନ କରୁଣା କରି ଏ ଦୃଶ୍ୟ ଦେଖାଉଛନ୍ତି ।

ଭଗବାନ୍ ଶ୍ରୀକୃଷ୍ଣଙ୍କର ଏହି ଅଲୌକିକ ରୂପ ଦେଖି ଅକ୍ରୁର ସ୍ତବ କରିବାକୁ ଲାଗିଲେ ଓ ମାନସ ପୂଜା ଦ୍ୱାରା ନାନାବିଧ ଅର୍ଚ୍ଚନା କରିବାକୁ ଲାଗିଲେ । ତା'ପରେ ସେ ପାଣିରୁ ବାହାରି ଆସି ଦେଖିଲେ କୃଷ୍ଣ ବଳରାମଙ୍କ ଦେହରେ



ତାଙ୍କର ଅର୍ଚ୍ଚନାର ଚିହ୍ନ ସବୁ । ଅକ୍ରୂର କୃଷ୍ଣ-ଭାବରେ ଗଦ୍‌ଗଦ୍ ହୋଇ ପଡିଲେ । ଚକ୍ଷୁରୁ ତାଙ୍କର ବହିଗଲା ଅଜସ୍ର ଅଶ୍ରୁଧାର । ଆହା, ଆଜି ଭଗବାନ୍ କେଡ଼େ ବଡ଼ କୃପା ନ କଲେ ତାଙ୍କୁ ! ସେ ହୃଦୟରେ ଭଗବାନଙ୍କୁ କୃତଜ୍ଞତା ଜଣାଇଲେ, ତାଙ୍କର ଜନ୍ମ ଜୀବନ ସାର୍ଥକ ହେଲା । କୃପାମୟ, ଭାବଗ୍ରାହୀ କୃଷ୍ଣଙ୍କୁ ଚାହିଁ ଚାହିଁ ସେ ଜଳରୁ ନିର୍ଗତ ହେଲେ । କିନ୍ତୁ ତାଙ୍କ ଆଖିରୁ ଅଶ୍ରୁଧାରା ବନ୍ଦ ହେଉ ନଥାଏ । ଜଳରୁ ଉଠୁ ଉଠୁ ପୁଣି ଥରେ ଭଗବାନ୍ କୃଷ୍ଣଙ୍କର ସେହି ଅପରୂପ ଦେଖିବାକୁ ତାଙ୍କର ମନ ହେଲା । ପୁଣି ସେ ଜଳରେ ବୁଡିଲେ ଓ ସେହି ଅଭୂତପୂର୍ବ ଦୃଶ୍ୟ ଅବଲୋକନ କଲେ । ସେ ବାରମ୍ବାର ଜଳରେ ବୁଡୁଥା'ନ୍ତି ଓ ସେ ଅଭୂତ ଦୃଶ୍ୟ ଦେଖୁଥା'ନ୍ତି । କିଛି ସମୟ ପରେ ଦୃଶ୍ୟ ଧୀରେ ଧୀରେ ଅନ୍ତର୍ହିତ ହୁଅନ୍ତେ ସେ ସ୍ନାନ ସାରି କୂଳକୁ ଆସିଲେ । ତାଙ୍କ ମୁହଁର ଭାବ ଅନ୍ୟ ପ୍ରକାର । ଆଖି ଦୁଇଟି ପ୍ରଭୁଙ୍କ ପ୍ରେମରେ ଢଳ ଢଳ । ଅକ୍ରୂରଙ୍କର ଏପରି ଭାବ ଗଦ୍‌ଗଦ୍ ରୂପ ଦେଖି ଚତୁର କୃଷ୍ଣ ପଚାରିଲେ, "ଆପଣ ଏତେ ଡେରି କଲେ କାହିଁକି ? ଆପଣଙ୍କ ମୁହଁର ଭାବ ତ ସଂପୂର୍ଣ୍ଣ ଭିନ୍ନ । କ'ଣ କିଛି ଘଟିଲା କି ?"

ଅକ୍ରୂର ଭାବପୂର୍ଣ୍ଣ କଣ୍ଠରେ କହିଲେ, "ପ୍ରଭୁ, ତୁମର ଏତେ ନିକଟରେ ଯେ ମୁଁ ଅଛି ତା'ଠାରୁ ବଳି ଆଉ ଅଧିକ ସୌଭାଗ୍ୟ କ'ଣ ଥାଇପାରେ ? ହେ କୃପାନିଧି, ବ୍ରହ୍ମା, ଇନ୍ଦ୍ର, ଯେଉଁ ରୂପ ଦେଖିବାକୁ ଅସମର୍ଥ ସେହି ଅଲୌକିକ ତୁମର ଓ ବଳରାମଙ୍କର ରୂପ ମୁଁ ଜଳ ମଧ୍ୟରେ ଅବଲୋକନ କରି ଆଜି ଧନ୍ୟ ହେଲି । କିନ୍ତୁ ଯେଉଁ ରୂପକୁ ବର୍ଣ୍ଣନା କରିବାକୁ ବ୍ରହ୍ମାଙ୍କର ମଧ୍ୟ ସାଧ୍ୟ ନାହିଁ, ତାକୁ ମୁଁ ଛାର ଅଧମ ବ୍ୟକ୍ତି ବା କି ବର୍ଣ୍ଣନା କରିବି ? ଏବେ ଏତିକି ମାତ୍ର ପ୍ରାର୍ଥନା ଏହିପରି ମୋ ଉପରେ ସଦା ଅନୁଗ୍ରହ ରଖିଥିବେ । ଏବେ ସୂର୍ଯ୍ୟାସ୍ତ ଆଗତ ପ୍ରାୟ । କଂସର ଆଦେଶ, ତା' ପୂର୍ବରୁ ଆମେ ଯେପରି ମଥୁରାରେ ପହଞ୍ଚିବା । ନହେଲେ ତା'ର ପ୍ରବଳ କ୍ରୋଧ ସହ୍ୟ କରିବା କଠିନ ହୋଇ ପଡିବ ।"



ଶ୍ରୀକୃଷ୍ଣ ଅଳ୍ପ ଅଳ୍ପ ହସି କହିଲେ, "ଏବେ ଆମେ ଦୁହେଁ ତ ଆପଣଙ୍କର ଅଧୀନ । ଯାହା କରାଇବାକୁ ଇଚ୍ଛା ଆମକୁ ଖାଲି କୁହନ୍ତୁ, ଆମେ କରିବୁ । ଆମେ ଦୁହେଁ ତ ଆପଣଙ୍କରହିଁ । ଆପଣଙ୍କ ନିର୍ଦ୍ଦେଶ ପାଳନ କରି ଆପଣଙ୍କ ସହ ମଥୁରା ଯାତ୍ରା କରୁଛୁଁ ।"

ତା'ପରେ ପୁଣି ରଥ ଚାଲିଲା । ସନ୍ଧ୍ୟା ପୂର୍ବରୁ ରଥ ପହଞ୍ଚିଲା ଯାଇ ମଥୁରା ନଗରୀରେ । କୃଷ୍ଣ ଅକ୍ରୂରଙ୍କୁ କହିଲେ, "ମହାଶୟ, ଅନେକ ଦିନରୁ ଆମେ ମଥୁରା ନଗରୀ ବିଷୟରେ ଅନେକ କଥା ଶୁଣିଛୁ । ଏବେ ଦେଖିବାର ଆମର ସୌଭାଗ୍ୟ ହେଲା । ତେଣୁ ଆପଣ ଆମକୁ ଅନୁମତି ଦେଲେ ଆମେ ଦୁହେଁ ନଗରୀ ବୁଲି ଦେଖନ୍ତୁ ।"

ଅକ୍ରୂର ଏକଥା ଶୁଣି କୃଷ୍ଣ ଓ ବଳରାମଙ୍କୁ ରଥରୁ ଓହ୍ଲାଇ ଦେଇ କହିଲେ, "ତୁମେମାନେ ମଥୁରା ନଗରୀ ବୁଲି ବୁଲି ଦେଖ । କିନ୍ତୁ ମନେରଖ ଯଦି ତମେମାନେ ଦେବକୀ ବସୁଦେବଙ୍କୁ ଦେଖା କରିବାକୁ ଚାହିଁବ କଂସକୁ ଦେଖା କରିବା ପୂର୍ବରୁ, ତେବେ ସେ କ୍ଷିପ୍ତ ହେବ । ମୁଁ ଯାଉଛି; କଂସକୁ ତମେମାନେ ଆସିବାର ଖବର ଦିଏ ।"

କୃଷ୍ଣ ବଳରାମଙ୍କୁ ନଗରୀର ପ୍ରଶସ୍ତ ରାଜପଥ ଉପରେ ଠାଏଁ ରଥରୁ ଅବତରଣ କରାଇ ଅକ୍ରୂର ରଥ ନେଇ ଚାଲିଗଲେ । ଦୁଇ ଭାଇ କିଛି ସମୟ ପର୍ଯ୍ୟନ୍ତ ସେଠାରେ ଠିଆ ହୋଇ ଚାରିଆଡ଼କୁ ଦୃଷ୍ଟିପାତ କଲେ ।

ବନ୍ଧନମୁକ୍ତ ହାତୀ ଦୁଇଟି ପରି ଦୁଇଭାଇ ମଥୁରା ନଗରୀର ଦୃଶ୍ୟ ସବୁ ବୁଲି ବୁଲି ଦେଖୁଥା'ନ୍ତି । ସେମାନଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ମଥୁରାର ନରନାରୀ ତାଙ୍କ ପାଖକୁ ଆକୃଷ୍ଟ ହୋଇ ଆସୁଥା'ନ୍ତି । ସେମାନେ ଏହି ଭାଇ ଦୁହିଁଙ୍କ ବିଷୟରେ ନାନା ପ୍ରକାରର କଥାବାର୍ତ୍ତା କରୁଥା'ନ୍ତି । କିଛିବାଟ ଯିବା ପରେ ଦେଖିଲେ ଜଣେ ରଜକ ବହୁତ ଗୁଡ଼ିଏ ସୁନ୍ଦର ବସ୍ତ୍ରର ଗଣ୍ଠିଲି ମୁଣ୍ଡାଇ ଯାଉଛି । ଶ୍ରୀକୃଷ୍ଣ କହିଲେ, "ଶୁଣ ଭାଇ, ଆମେ ସବୁ ରାଜାଙ୍କ ଦର୍ଶନ କରିବାକୁ ଆସିଛୁ, ଆମେ ରାଜାଙ୍କ ଭଣଜା । ତେଣୁ ତୁମେ ଦୟାକରି କିଛି ଭଲ ଲୁଗା ଦିଅ ଯାହାକୁ ଆମେ ପିନ୍ଧି ଦରବାରକୁ ଯିବୁ ।"



ରଜକ ରାଗିଯାଇ କହିଲା, "କ'ଣ ହେଲା ? ମହାରାଜାଙ୍କର ମୂଲ୍ୟବାନ୍ ବସ୍ତ୍ର ସବୁ ତମେ ଦୁହେଁ ପିନ୍ଧିବ ? ବଣୁଆ ଜାତିର ଟୋକା ଦୁଇଟା କେଉଁଠୁ ଆସି କହୁଛ କ'ଣ ନା ରାଜାଙ୍କ ଭଣଜା ! ଯା, ଯା, ଠକ କେଉଁଠିକାର ।"

ରଜକର କଥା ଶୁଣି କୃଷ୍ଣ ରାଗିଯାଇ ତାକୁ ଗୋଟାଏ ଚାପୁଡ଼ା ଦେଲେ ଯେ ସେଇଥିରେ ସେ ମରିଗଲା । ଚାରିଆଡ଼େ କୋଳାହଳ ପଡ଼ିଗଲା । ଏଣେ ଜଣେ ଦୂତ ଯାଇ ରାଜାଙ୍କୁ ସବୁ କଥା ଜଣାଇଲା । କୃଷ୍ଣ ବଳରାମ ଲୁଗା ଗଣ୍ଠିଲିରୁ ବାଛି ବାଛି ଦୁଇଟି ହଳଦିଆ ଓ ନୀଳ ରଙ୍ଗର ଲୁଗା ଆଣି ପିନ୍ଧିଲେ । ତା'ପରେ ସେଠାରେ ସମବେତ ହୋଇଥିବା ସମସ୍ତ ନରନାରୀଙ୍କୁ କୃଷ୍ଣ ସେହି ରାଜପୋଷାକ ସବୁ ବାଣ୍ଟି ଦେଲେ ।

ତା'ପରେ ଦୁଇଭାଇ କିଛି ଦୂର ଯାଇ ଦେଖିଲେ ଗୋଟିଏ ମାଳାକାରର ଫୁଲ ଦୋକାନ । ନାନାଦି ଫୁଲରେ ତାହା ଭରି । କୃଷ୍ଣ ଏତେ ସୁନ୍ଦର ଫୁଲ ସବୁ ଦେଖି ଅତି ଆନନ୍ଦ ହୋଇ କହିଲେ, "ଭାଇ କିଛି ସୁନ୍ଦର ବାସ୍ନା ଫୁଲର ହାର ଦୁଇଟି ଆମକୁ ପିନ୍ଧାଇ ଦିଅ ।" ଏମାନଙ୍କ କଥା ମାଳାକାର ଆଗରୁ ଶୁଣିଥିଲା । ସେ ଭାବିଲା ଏମାନେ ଯକ୍ଷ କି ଗନ୍ଧର୍ବ କିମ୍ବା ସିଦ୍ଧ । ତେଣୁ ସେ କହିଲା, "ଆଜ୍ଞା ଏ ସାରା ଫୁଲ ଦୋକାନଟିହିଁ ଆପଣଙ୍କର । ଯାହା ଇଚ୍ଛା ଆଦେଶ କରନ୍ତୁ ।" ସେଠାରୁ ସୁନ୍ଦର ସୁନ୍ଦର ହାର ଗଳାରେ ପକାଇ ଦୁଇଭାଇ ପୁଣି ଆଗକୁ ଚାଲିଲେ । କିଛି ଦୂର ଯିବା ପରେ ଦେଖିଲେ ସୁନ୍ଦର ବାସ୍ନା ଚନ୍ଦନ ଧରି ଜଣେ କୁବୁଜା ନାରୀ ରାସ୍ତାରେ ଯାଉଛି । କୃଷ୍ଣ ତାକୁ ପଚାରିଲେ, "ଏ ସବୁ ତୁ କାହାପାଇଁ ନେଉଛୁ ?"

"ଏସବୁ ମହାରାଜ କଂସଙ୍କର ଅଙ୍ଗ ଲଗି ପାଇଁ । ଏବେ ସେ ସ୍ନାନକରି ସାରିବା ପରେ ମୁଁ ଏହି ମୂଲ୍ୟବାନ୍ ଚନ୍ଦନ, ଅଗୁରୁ ଓ କସ୍ତୁରୀ ସବୁ ତାଙ୍କ ଦେହରେ ଲଗାଇ ଦେବ ।"

"ଆମକୁ ପ୍ରଥମ ଲଗାଇ ଦେ ।" କୃଷ୍ଣ କହିଲେ । ବିଚରା କୁବୁଜା କରେ କ'ଣ ? ବାଧ୍ୟ ହୋଇ ଭଲ ଭଲ ଚନ୍ଦନ ସବୁ ଲଗାଇ ଦୁଇଭାଇଙ୍କୁ ବେଶ କରିଦେଲା । କୃଷ୍ଣ ଖୁସି

ହୋଇ ନିଜ ହାତରେ ତା'ର ବଙ୍କା ହୋଇଥିବା ଦେହକୁ ସଜାଡି ଦେଲେ । ତତ୍‌କ୍ଷଣାତ୍ ଭଗବାନଙ୍କ ସ୍ପର୍ଶ ପାଇ ସେ ଏକ ଅପରୂପ ସୁନ୍ଦରୀ ନାରୀରେ ପରିଣତ ହେଲା । ସେ କୃଷ୍ଣଙ୍କ ହାତ ଧରି କହିଲା, "ହେ ପ୍ରଭୁ ମୋର କୁତ୍ସିତ ଦେହକୁ ଆପଣ ସ୍ପର୍ଶ କରି ଅପରୂପ ସୌନ୍ଦର୍ଯ୍ୟ ପ୍ରଦାନ କରିଛନ୍ତି । ଆପଣ ଦୟାକରି ଆମ ଘରେ ଥରେ ପାଦ ଦେବେ, ମୁଁ ଧନ୍ୟ ହୋଇଯିବି ।"

କୃଷ୍ଣ କହିଲେ, "ଏବେ ଆମେ ଅତ୍ୟନ୍ତ ବ୍ୟସ୍ତ ଅଛୁ । ପରେ ମୁଁ କେବେ ମଧ୍ୟ ତୁମ ଘରକୁ ଆସିବି । ତମେ ନିଶ୍ଚିନ୍ତ ରୁହ, ମୁଁ କଥା ଦେଉଛି ମୁଁ ଆସିବି ।" ଏହାପରେ କୁବୁଜାକୁ ସାନ୍ତ୍ୱନା ଦେବା ପରେ ଭଗବାନ୍ ଶ୍ରୀକୃଷ୍ଣ ଓ ବଳରାମ ମଥୁରା ନଗରୀର ସୌନ୍ଦର୍ଯ୍ୟ ଦେଖୁ ଦେଖୁ କଂସର ରାଜନବରର ଦ୍ୱାରରେ ପହଞ୍ଚିଲେ । ସେଠାରେ ଅନେକ ଲୋକ ସମବେତ ହୋଇ ରାଜା କଂସର ଧନୁଉତ୍ସବ ନିମନ୍ତେ ପଠା- ହୋଇଥିବା ଅନ୍ୟ ରାଜାମାନଙ୍କର ଉପଢୌକନ ଆଦି ଦେଖି ବହୁ ପ୍ରକାର କୋଳାହଳ କରୁଥିଲେ ।

ଇତିମଧ୍ୟରେ କୃଷ୍ଣ ଧନୁଉତ୍ସବ ପାଇଁ ରଖା ଯାଇଥିବା ପ୍ରକାଣ୍ଡ ଧନୁକୁ ଦେଖିବା ଉଦ୍ଦେଶ୍ୟରେ ସବୁ ଲୋକଙ୍କ ସହିତ ସେଠାକୁ ଗଲେ । ସେଠାରେ ତାହା ଏକ ଉଚ୍ଚ ମଣ୍ଡପ ଉପରେ ନାଗରାଜ ତକ୍ଷକ ଦେହ ପରି ରଖା ଯାଇଥାଏ । ଦେଖୁ ଦେଖୁ କୃଷ୍ଣ ସେହି ଧନୁଟି ଅନାୟାସରେ ଉପରକୁ ଉଠାଇ ନେଇ ସେଥିରେ ଥରେ ଗୁଣ ଚଢ଼ାଇଲେ । ଧନୁର ଟଙ୍କାର ଶବ୍ଦରେ ମଥୁରା ପ୍ରକମ୍ପିତ ହେଲା । ଏହି ଅଦ୍ଭୁତ ଶବ୍ଦ ଶୁଣି କିଏ ବା ତାହା ମଙ୍ଗଳସୂଚକ ଓ କିଏ ବା ଅମଙ୍ଗଳସୂଚକ ବୋଲି କହିଲେ । କଂସ ମନେ ମନେ ବିସ୍ମିତ ହେଲା । କିଛି ସମୟ ପରେ ଧନୁଗୃହର ରକ୍ଷକ ସୈନ୍ୟମାନେ ଭୟରେ କାତର ହୋଇ ସେହି ସ୍ଥାନ ଛାଡିଯାଇ ସମସ୍ତ ବୃତ୍ତାନ୍ତ ମହାରାଜ କଂସକୁ ଜଣାଇଲେ ।





# ମଣିଷ-ହେଟା

ବ୍ରିଟେନ୍‌ର ଗୋଟିଏ ଦୁର୍ଗରେ ଜଣେ ସାମନ୍ତ ରାଜା ଥା'ନ୍ତି । ସେ ଯୁବକ ଥିଲେ ଓ ମହାରାଜାଙ୍କର ପ୍ରିୟପାତ୍ର ଥିଲେ । ତାଙ୍କ ସ୍ତ୍ରୀ ଥିଲା ବଡ଼ ସୁନ୍ଦରୀ । ବାହ୍ୟଭାବରେ ସେ ସ୍ୱାମୀଙ୍କର ସେବା କରି ନିଜର ବିଶ୍ୱସ୍ତତା ଦେଖାଇଲେ ମଧ୍ୟ ଭିତରେ ତା'ର ସ୍ୱଭାବ ଚରିତ୍ର ଭଲ ନଥିଲା । ସ୍ୱାମୀ ସର୍ବଦା ରାଜକାର୍ଯ୍ୟରେ ଅନୁପସ୍ଥିତ ଥିବାରୁ ସେହି ସୁଯୋଗରେ ଅନ୍ୟ ଏକ ସାମନ୍ତ ରାଜା ସହିତ ସେ ଗୋପନରେ ସମ୍ପର୍କ ରଖିଥିଲା ଓ ସ୍ୱାମୀଙ୍କୁ ଛାଡ଼ି କୌଣସି ମତେ ତାଙ୍କୁ ବିବାହ କରିବା ପାଇଁ ନାନା ପ୍ରକାର ଉପାୟ ଚିନ୍ତା କରୁଥିଲା ।

ସେହି ସ୍ତ୍ରୀ ଲକ୍ଷ୍ୟ କରି ଦେଖିଲା ଯେ ପ୍ରତି ସପ୍ତାହର ଶେଷ ତିନିଦିନ ସ୍ୱାମୀ କୁଆଡ଼େ ରହନ୍ତି, ଶେଷଦିନ ଘରକୁ ଫେରନ୍ତି । ଏ ରହସ୍ୟ ଜାଣିବା ପାଇଁ ସେ ବ୍ୟାକୁଳ ହେଲା । ଦିନେ ସେ ଦୁଃଖର ଅଭିନୟ କରି କହିଲା, "ଆପଣ ପ୍ରତ୍ୟେକ ସପ୍ତାହରେ ତିନିଦିନ କୁଆଡ଼େ ଯାଉଛନ୍ତି? ଭୟ ଓ ଆଶଙ୍କାରେ ମୁଁ ରାତିରେ ଭଲକରି ଶୋଇପାରେ ନାହିଁ ।"

"କ'ଣ କରିବ? ମୁଁ ନାଗୃର, ମୋତେ ଯିବାକୁହିଁ ପଡ଼ିବ । ଜାଣିଶୁଣି ଇଚ୍ଛା କରି କ'ଣ ମୁଁ ତୁମକୁ ଏକାକୀ ଛାଡ଼ି ଯାଉଛି? ମୁଁ ଦୂରରେ ଥାଇ ମଧ୍ୟ ତୁମରି କଥାହିଁ ଚିନ୍ତା କରୁଥାଏ ।" ସ୍ୱାମୀ କହିଲେ ।

"ଏମିତି କ'ଣ ଜରୁରୀ କାମ ଯେ ନ କଲେ ତମେ ରହିପାରିବ ନାହିଁ? ମୋତେ ନିଜର ଭାବୁଥିଲେ ନିଶ୍ଚୟ ସବୁ ମୋତେ ଖୋଲି କହନ୍ତୁ ।" ପତ୍ନୀ କହିଲା ।

ପତ୍ନୀଙ୍କର ଅନୁନୟ ବିନୟ ଓ ଅଭିମାନରେ ତରଳି ଯାଇ ସେ କହିଲେ, "ତମେ ଶପଥ କରି କୁହ, କାହା ଆଗରେ ଏକଥା ପ୍ରକାଶ

ଫ୍ରାନ୍ସର ଲୋକକଥା



"କରିବ ନାହିଁ ।" ପତ୍ନୀ ଏକଥା ସ୍ୱୀକାର କରନ୍ତେ ସେ କହିଲେ, "ତେବେ ଶୁଣ, ମୋର ଏପରି ଏକ ଦୁର୍ଭାଗ୍ୟ ଯେ ଦିନାଦିନ ପାଇଁ ମୋତେ ହେଟା ରୂପରେ ବଣରେ ରହିବାକୁ ପଡ଼େ । କେବେ ଏ ଦୁର୍ଭାଗ୍ୟର ଅବସାନ ହେବ ଜାଣେ ନାହିଁ ।"

"ଏ ତ ବହୁତ ବିସ୍ମୟକର କଥା ! କିନ୍ତୁ ଏପରି ପରିବର୍ତ୍ତନ ହୁଏ କିପରି ?" ପତ୍ନୀ ପଚାରିଲା ।

ସ୍ୱାମୀ କହିଲେ, "ଜଙ୍ଗଲରେ ପ୍ରବେଶ କରି ମୁଁ ନିଜର ସମସ୍ତ ବସ୍ତ୍ର ଦେହରୁ ଉତାରି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ରଖିଦିଏ; ତା'ପରେ ମୁଁ ହେଟା ହୋଇଯାଏ । ଦିନାଦିନ ହେଟା ରୂପରେ ରହିବା ପରେ ପୁଣି ମୋର ନିଜ ରୂପ ଫେରିପାଏ ବସ୍ତ୍ରଗୁଡ଼ିକ ପିନ୍ଧିବା ଯୋଗୁଁ । କିନ୍ତୁ ଏହା ଏତେ ଗୁରୁତର ଯେ ତମେ ଏକଥା କାହା ଆଗରେ କହିବ ନାହିଁ । ଭାଗ୍ୟରେ ଯାହାଥିବ ।"

"କିନ୍ତୁ ବସ୍ତ୍ରଗୁଡ଼ିକ ଆପଣ କେଉଁ ନିର୍ଦ୍ଦିଷ୍ଟ ସ୍ଥାନରେ ରଖନ୍ତି ?" ପତ୍ନୀ ଆଦର ଦେଖାଇ ପଚାରିଲା ।

"ତାହାହିଁ ତ ମୋର ପରମ ରହସ୍ୟ । କାରଣ ଯଦି ଅନ୍ୟ କେହି ଏକଥା ଜାଣି ମୋର ବସ୍ତ୍ରଗୁଡ଼ିକ ଲୁଚାଇ ଦିଏ ତେବେ ମୁଁ ସାରା ଜୀବନ ହେଟା ରୂପରେହିଁ କଟାଇବି ।" ସ୍ୱାମୀ କହିଲେ ।

ଏକଥା ଶୁଣି ପତ୍ନୀ ମନେ ମନେ ଖୁସି ହେଲା ଓ ସ୍ୱାମୀଙ୍କ ସହିତ ବହୁତ ଆଦର ପୂର୍ଣ୍ଣ ବ୍ୟବହାର କଲା । ସେଥିରେ ସ୍ୱାମୀ ମୋହିତ ହୋଇଯିବା ଜାଣି ପତ୍ନୀ ପୁଣି ସ୍ଥାନଟିକୁ ଜାଣିବାକୁ ବହୁତ ଅନୁନୟ ବିନୟ କଲା । ସ୍ୱାମୀ ଶେଷକୁ ରହସ୍ୟଟି ଖୋଲି ଦେଲେ । ସେ କହିଲେ, "ବନର ମଧ୍ୟ ଭାଗରେ ଗୋଟିଏ ସମତଳଭୂମି ଅଛି । ସେଠାରେ ଗୋଟାଏ ପାହାଡ଼ ଖୋଲ ଅଛି । ମୁଁ ସେଇଠି ମୋ ବସ୍ତ୍ରଗୁଡିକ ଲୁଚାଇ ରଖେ । ଦିନାଦିନ ପରେ ମୋତେ ସହଜରେ ସେଗୁଡିକ ମିଳିଯାଏ । ସେଠାରେ କାହାର ଭୁଲ୍‌ରେ ବି ନଜର ପଡ଼ିବ ନାହିଁ ।"



ପରବର୍ତ୍ତୀ ସପ୍ତାହରେ ସ୍ୱାମୀ ବନକୁ ଯିବା ମାତ୍ରେ ସେହି ପତ୍ନୀ ସାମନ୍ତ ରଜାକୁ ଡକାଇ ପଠାଇଲା; ସେ ଆସିବା ମାତ୍ରେ ସ୍ୱାମୀର ବସ୍ତ୍ରଗୁଡ଼ିକ ସେହି ଗୁପ୍ତସ୍ଥାନରୁ ନେଇ ଆସିବା ପାଇଁ କହିଲା । ତା'ର ଇଚ୍ଛା ତତ୍‌କ୍ଷଣାତ୍ ପାଳିତ ହେଲା । ଲୁଗା ସବୁ ସେ ଗୋଟିଏ ପେଡ଼ିରେ ସାଇତି ରଖିଲା ।

ଏଣେ ହେଟାରୂପି ସ୍ୱାମୀ ଭନାଦନ ପରେ ଫେରି ଆସି ନିର୍ଦ୍ଦିଷ୍ଟ ସ୍ଥାନରେ ତାଙ୍କର ବସ୍ତ୍ରଗୁଡ଼ିକ ନ ପାଇ ବଡ଼ ବ୍ୟଥିତ ହେଲେ । ସେ ନିଶ୍ଚିତ ଭାବରେ ଜାଣିପାରିଲେ କି ଏହା ସବୁ ସେହି ଦୁଷ୍ଟ ସ୍ତ୍ରୀର କାମ । ତାଙ୍କର ପ୍ରତିଶୋଧ ନେବାକୁ ବହୁତ ଇଚ୍ଛା ହେଉଥାଏ । କିନ୍ତୁ ସେ ନାଗ୍ଯର । ଜଙ୍ଗଲ ବାହାରକୁ ଗଲେ ମଣିଷମାନେ କୁକୁର ଲଗାଇ ତାଙ୍କୁ ମାରିଦେବେ ।

ଏଣେ ସ୍ତ୍ରୀ ସ୍ୱାମୀ ପାଇଁ ମିଛରେ କାନ୍ଦିଲା ତା'ପରେ ସେହି ସାମନ୍ତ ରଜାକୁ ବିବାହ କରି ଆନନ୍ଦରେ ଥାଏ ।

ବର୍ଷେକାଳ ବିଚରା ସ୍ୱାମୀଟି ହେଟା ରୂପରେ ଜଙ୍ଗଲରେ କଷ୍ଟପାଇ ଥା'ନ୍ତି । ଦିନେ ମୁଖ୍ୟ ରାଜା ଅନୁଚରବର୍ଗ ସହ ଶୀକାର କରିବାକୁ ସେହି ଜଙ୍ଗଲକୁ ଆସିଥା'ନ୍ତି । ଶୀକାରୀ କୁକୁରମାନେ ହେଟାମାନଙ୍କର ଗନ୍ଧ ପାଇ ତଡୁଥା'ନ୍ତି । ସେ ବିଚରା ଦୌଡି ଦୌଡ଼ି ପ୍ରାଣ ବଞ୍ଚାଉଥା'ନ୍ତି । ଏମିତି ଦୌଡୁ ଦୌଡୁ ବହୁତ କ୍ଳାନ୍ତ ହୋଇ ଦେଖିଲା ତାକୁ ଭଲ ପାଉଥିବା ରାଜା ଅନୁଚରଙ୍କଠାରୁ ଟିକିଏ ଦୂରରେ ଅଛନ୍ତି । ସେ ସେହି ରାଜାଙ୍କ ପାଖକୁ ଯାଇ ଦୁଇ ଗୋଡ଼ ଉପରକୁ ଉଠାଇ ରାଜାଙ୍କ ପାଦରେ ମୁଣ୍ଡ ଠୁକାଇଲେ । ଏକଥା ଦେଖି ରାଜା ବିସ୍ମିତ ହେଲେ ଓ କହିଲେ, "ନିଶ୍ଚୟ ଏହି ହେଟା କିଛି ବିପଦରେ ପଡି ମୋର ଶରଣ ଚାହୁଁଛି । ଶିକାରୀ କୁକୁରଙ୍କୁ ଛାଡ ନାହିଁ । ମୁଁ ତାକୁ ନେଇ ଜଙ୍ଗଲରେ ଛାଡ଼ି ଆସିବି ।"

ରାଜା ହେଟାକୁ ନେଇ ଜଙ୍ଗଲରେ ଛାଡ଼ିବାକୁ ଉଦ୍ୟତ ହୁଅନ୍ତେ ହେଟା ରାଜାଙ୍କୁ ଆଦୌ ଛାଡ଼ିଲା ନାହିଁ । ରାଜା ବାଧ୍ୟ ହୋଇ ହେଟାକୁ ନେଇ ରାଜ୍ୟକୁ ଲେଉଟି ଆସିଲେ । ରାଜାଙ୍କ ଘୋଡ଼ା ପାଖେ ପାଖେ ସେ ଚାଲିଥାଏ ।



ନିର୍ବାରରେ ପହଞ୍ଚି ରାଜା ପରିଚାରକଙ୍କୁ ଆଦେଶ ଦେଲେ, "ଏହି ହେଷ୍ଟା ମୋ ପଟରୁ ସୁରକ୍ଷା ଗୃହିଛି। ଏହାକୁ ସବୁଦିନେ ଭଲ ମାଂସ ଖାଇବାକୁ ଦେଇ ରଖିବ। ମନେରଖ ସେ ସର୍ବଦା ବିପଦରୁ ସୁରକ୍ଷିତ ଯେପରି ରହେ। କିଛି ହାନି ଯେପରି ତା'ର ନ ଘଟେ।"

ସେହିଦିନଠାରୁ ହେଷ୍ଟାଟି ଘରର କୁକୁର ପରି ରାଜମହଲରେ ଥାଏ। କାହାର କିଛି କ୍ଷତି କରେନାହିଁ। ବଡ଼ ସାଧୁ ପ୍ରକୃତିର ହୋଇଥାଏ। ବେଶି ସମୟ ରାଜାଙ୍କ ପାଖେ ପାଖେ ଥାଏ। ରାତିରେ ମଧ୍ୟ ରାଜାଙ୍କ ଶୋଇବା ଘର ତଟାଣରେ ଶୁଏ। କ୍ରମେ ରାଜାଙ୍କର ତା' ପ୍ରତି ସ୍ନେହ ବଢ଼ିଲା।

ଦିନେ ରାଜାଙ୍କର ଦରବାରରେ ସବୁ ସାମନ୍ତ ରାଜାମାନେ ଉପସ୍ଥିତ ଥା'ନ୍ତି। ହେଷ୍ଟାର ସ୍ତ୍ରୀ ବିବାହ କରିଥିବା ବ୍ୟକ୍ତିଟି ମଧ୍ୟ ସେଠାରେ ଥାଏ। ତାକୁ ଦେଖି ହେଷ୍ଟା ତାକୁ ଦୁଇଥର ଆକ୍ରମଣ କଲା। ତା' ତଣ୍ଟି କାଟି ଦେଇଥା'ନ୍ତା, ଅନ୍ୟମାନେ କୌଣସି ମତେ ଦୁହିଁଙ୍କୁ ଅଲଗା କଲେ। ଏହାର ରହସ୍ୟ କେହି ଜାଣି ପାରିଲେ ନାହିଁ। କାରଣ ଉକ୍ତ ହେଷ୍ଟା କେବେହେଲେ କାହାକୁ ଆକ୍ରମଣ କରିନାହିଁ। ବେଶି ଗୋଳମାଳର ଆଶଙ୍କା କରି ରାଜା ଏଣିକି ହେଷ୍ଟାକୁ ଜଞ୍ଜିରରେ ବାନ୍ଧି ରଖିଲେ।

ଏ ଘଟଣାର କିଛିଦିନ ପରେ ରାଜା ପୁଣି ଶୀକାର କରିବାକୁ ଗଲେ। ସାଙ୍ଗରେ ହେଷ୍ଟା ମଧ୍ୟ ଥାଏ। ଯିବା ରାସ୍ତାରେ ହେଷ୍ଟା ହୋଇଥିବା ସାମନ୍ତଙ୍କ ଘର ପଡ଼ିଲା। ଆଗରୁ ତାଙ୍କର ପତ୍ନୀ ରାଜ ଅନୁଗ୍ରହ ପାଇବେ ଓ ନୂତନ ସ୍ୱାମୀଙ୍କ ଉପରେ ରାଜାଙ୍କର ଶୁଭଦୃଷ୍ଟି ପଡ଼ିବ, ଏଇ ଉଦ୍ଦେଶ୍ୟରେ ସେ ରାଜାଙ୍କୁ ଓ ତାଙ୍କର ଲୋକ-ମାନଙ୍କୁ ବହୁ ଆଡ଼ମ୍ବର ସହକାରେ ଅତିଥି ସତ୍କାର କଲା। ରାଜା ମଧ୍ୟ ତାଙ୍କର ପୂର୍ବତନ ପ୍ରିୟ ସାମନ୍ତ ରାଜାଙ୍କ ସ୍ମୃତି ମନେକରି ତାଙ୍କର ଆତିଥ୍ୟ ସ୍ୱୀକାର କଲେ। ସେହି ସ୍ତ୍ରୀ ରାଜାଙ୍କ ପାଇଁ କିଛି ଉପହାର ମଧ୍ୟ ଆଣିଥାଏ।

ସେ ଯିମିତି ଉପହାର ସହ ରାଜାଙ୍କ ନିକଟରେ ପହଞ୍ଚିଛି, ହେଷ୍ଟା ହଠାତ୍ ଆକ୍ରମଣ

କରି ତାକୁ ମାରି ଦେବାକୁ ଚେଷ୍ଟା କଲା । ଅନ୍ୟମାନେ ଖଣ୍ଡାରେ ହେଟାକୁ ମାରି ଦେବାକୁ ଦୌଡ଼ିଲେ । କିନ୍ତୁ ରାଜା ହେଟାକୁ ପୁଣି ନିଜ ପାଖକୁ ଡାକି ନେଲେ । ତା'ପରେ କିଛି ସମୟ ଚିନ୍ତା କରିବା ପରେ ରାଜା କହିଲେ, "ଏହି ମହିଳାଙ୍କର ପ୍ରଥମ ସ୍ୱାମୀ ମୋର ପ୍ରିୟ ବନ୍ଧୁ ଥିଲେ । ଏବେ ସୁଦ୍ଧା ଏ ରହସ୍ୟ ଜଣା ପଡ଼ିନାହିଁ କି ତାଙ୍କର କ'ଣ ହେଲା; ସେ କୁଆଡ଼େ ଗଲେ । ତାଙ୍କର ହଠାତ୍ ଏପରି ନିରୁଦ୍ଦେଶ ହୋଇଯିବା ପରେ ପରେହିଁ ଏହି ମହିଳାଙ୍କର ଦ୍ୱିତୀୟ ସ୍ୱାମୀ ତାଙ୍କର ସବୁ ସମ୍ପତ୍ତି ନେଇ ବସିଛନ୍ତି । ଏହା ପଛରେ କିଛି ରହସ୍ୟ ଅଛି । ନଚେତ୍ ଏହି ସାଧୁସ୍ୱଭାବର ହେଟା କାହିଁକି ସେହି ଦୁହିଁଙ୍କୁହିଁ ଆକ୍ରମଣ କଲା? ଆଉ ତ କାହାକୁ କରିନାହିଁ କେବେ! ଏବେ ତମେମାନେ ଏହି ପତିପତ୍ନୀ ଦୁହିଁଙ୍କୁ କାରାଗାରରେ ବନ୍ଦୀ କରି ରଖ, ସମସ୍ତ ସତ୍ୟର ଉଦ୍‌ଘାଟନ ହେବ ।"

ରାଜାଙ୍କର ଆଦେଶ ତତ୍‌କ୍ଷଣାତ୍ ପାଳିତ ହେଲା । କାରାଗାରରେ କିଛିଦିନ ବନ୍ଦୀ ହୋଇ ରହିବା ପରେ ପତ୍ନୀ ସବୁ ଦୋଷ ସ୍ୱୀକାର କଲା ।

ରାଜା ଲୋକ ପଠାଇ ପେଡ଼ିରେ ସୁରକ୍ଷିତ ଥିବା ପୂର୍ବ ସାମନ୍ତଙ୍କ ବସ୍ତ୍ର ସବୁ ଅଣାଇଲେ ଓ ହେଟାକୁ ବସ୍ତ୍ରଗୁଡ଼ିକ ଦେଇ ଏକ ଛୋଟ ଘରେ ରଖିଲେ । ଟିକିଏ ସମୟ ପରେ ପୋଷାକ ପତ୍ର ପିନ୍ଧି ସେ ଘରୁ ବାହାରିଲେ ପୂର୍ବତନ ସାମନ୍ତରାଜା । ରାଜା ଅତ୍ୟନ୍ତ ଆନନ୍ଦିତ ହେଲେ ।

ତା'ପରେ ରାଜା ସେହି ଦୁଷ୍ଟା ସ୍ତ୍ରୀକୁ ତାର ଦ୍ୱିତୀୟ ସ୍ୱାମୀ ସହିତ ଦେଶରୁ ବାହାର କରିଦେଲେ ଓ ପୂର୍ବ ସ୍ୱାମୀକୁ ତାଙ୍କର ସବୁ ସମ୍ପତ୍ତି ଫେରାଇ ଦେଲେ । ବାକି ଜୀବନରେ ସେ ରାଜାଙ୍କ ସାନ୍ନିଧ୍ୟରେ ତିନିଦିନ ହେଟା ରୂପରେ ଓ ତିନିଦିନ ସାମନ୍ତ ରାଜା ରୂପରେ ରହି ଜୀବନ ବିତାଇଲେ ।






# ସେନାପତି ନିର୍ବାଚନ

ଅନେକ ଦିନ ପୂର୍ବର କଥା । ଦେବଗିରି ରାଜ୍ୟରେ ରାଜା ବିକ୍ରମ ସିଂହ ରାଜୁତି କରୁଥା'ନ୍ତି । ତାଙ୍କର ଯୁଗନ୍ଧର ନାମକ ଏକ ମହାନ୍ ମେଧାବୀ ଓ ବିଚାରଶୀଳ ମନ୍ତ୍ରୀ ଥିଲେ ଏବଂ ଶକ୍ତିବର୍ମା ନାମକ ଜଣେ ବୀର ଓ ପରାକ୍ରମୀ ସେନାପତି ଥିଲେ । ଦୁହେଁ ଥିଲେ ରାଜଭକ୍ତ । ଦୁହିଁଙ୍କ ସାହାଯ୍ୟରେ ରାଜା ଅତି ସୁନ୍ଦର ଭାବରେ ରାଜ୍ୟ ଶାସନ କରୁଥା'ନ୍ତି । ପ୍ରଜାମାନେ ଅତି ସୁଖ, ଶାନ୍ତିରେ ଥା'ନ୍ତି । ଶତ୍ରୁମାନେ ତ କଦାପି କଳ୍ପନାରେ ସୁଦ୍ଧା ଏହି ରାଜ୍ୟକୁ ଆକ୍ରମଣ କରିବାକୁ ସାହସ କରି ନାହାନ୍ତି । ଦୁର୍ଭାଗ୍ୟବଶତଃ ହଠାତ୍ ଦିନେ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ସେନାପତି ଶକ୍ତିବର୍ମା ମୃତ୍ୟୁ ମୁଖରେ ପଡ଼ିଲେ । ଏବେ ରାଜା ବଡ଼ ଚିନ୍ତାରେ ପଡ଼ିଲେ ସେନାପତି ପଦ କାହାକୁ ଦେବେ ।

"ମହାମନ୍ତ୍ରୀ, ଆମ ସୈନ୍ୟବାହିନୀର ସେନାଧ୍ୟକ୍ଷମାନଙ୍କ ଭିତରୁ କାହାକୁ ନୂତନ ସେନାପତି ରୂପେ ମନୋନୀତ କରାଯିବ ?" ରାଜା ପଚାରିଲେ ।

ମନ୍ତ୍ରୀ ଅନେକ ସମୟ ଚିନ୍ତା କରି କହିଲେ, "ମହାରାଜ, ଆମ ସୈନ୍ୟବାହିନୀ ବାହାରେ ମଧ୍ୟ ବହୁ ଉପଯୁକ୍ତ ଯୁବକ ଅଛନ୍ତି । ଆମ ସେନାଧ୍ୟକ୍ଷମାନଙ୍କ ଭିତରୁ ଜଣକୁ ସେନାପତି କଲେ ଅନ୍ୟମାନେ ମନ ଦୁଃଖ କରିବେ । ବାହାରୁ କାହାକୁ ଆଣିଲେ ସେ ଦୃଷ୍ଟିରୁ ବିପଦ ନାହିଁ । ଖାଲି ସେତିକି ନୁହେଁ, ସାଧାରଣ ଲୋକଙ୍କ ଭିତରେ ଯଦି କାହାରି ଅସାଧାରଣ ସାମରିକ ଦକ୍ଷତା ଥାଏ, ତେବେ ସେ ମଧ୍ୟ ସୁଯୋଗ ପାଇବା ଉଚିତ ।" ମନ୍ତ୍ରୀ ପରାମର୍ଶ ଦେଲେ । ରାଜାଙ୍କୁ ଏ ପରାମର୍ଶ ବେଶ୍ ଉଚିତ ମନେ ହେଲା । ସେହି ଅନୁସାରେ

କାଶୀନାଥ



ପଦକ୍ଷେପ ନେବା ନିମନ୍ତେ ସେ ମନ୍ତ୍ରୀଙ୍କୁ ନିର୍ଦ୍ଦେଶ ଦେଲେ ।

ସାରା ରାଜ୍ୟରେ ପ୍ରଚାର କରିଦିଆଗଲା କି ସେନାପତି ନିର୍ବାଚନ ପାଇଁ ପ୍ରାର୍ଥୀ ଆବଶ୍ୟକ । ଅନେକ ଯୋଦ୍ଧା ଓ ମେଧାବୀ ଯୁବକ ଆସିଲେ । ସେମାନଙ୍କୁ ନାନା ଭାବରେ ପରୀକ୍ଷା କରା ହେଉଥାଏ । ଅବଶେଷରେ ନିଖିଳ ଓ ନିଶାନ୍ତ ନାମକ ଦୁଇଜଣ ଯୁବକ ପ୍ରତ୍ୟେକ ପରୀକ୍ଷାରେ ସମାନ ଯୋଗ୍ୟତା ସହ ଉତ୍ତୀର୍ଣ୍ଣ ହେଲେ । କିନ୍ତୁ ସେ ଦୁଇଜଣଙ୍କ ମଧ୍ୟରୁ କିଏ ଯୋଗ୍ୟ ତାହା ବାଛିବା ଏକ ସମସ୍ୟା ହୋଇ ପଡ଼ିଲା ।

ତା'ପରେ ମନ୍ତ୍ରୀ ଯୁଗନ୍ଧର ଓ ରାଜା ବିକ୍ରମବର୍ମା ଦୁହେଁ ଅନେକ ସମୟ ଧରି ବିଚାର କରି ଠିକ୍ କଲେ କି ଆଉ ଏକ ଶେଷ ପରୀକ୍ଷା ହେବ ଯାହାର ଫଳାଫଳ ଉପରେ ନିର୍ଭର କରିବ ସେନାପତି ନିର୍ବାଚନ । ପରୀକ୍ଷାଟି ଥିଲା ଏହିପରି । ଦୁଇଟି ଶାଳ ଗଛର ଶାଖାରେ ଦୁଇଟି ପିଜୁଳି ରଖାହେବ । ଗଛ ତଳେ ଥିବା ପାଣିକୁଣ୍ଡକୁ ଚାହିଁ ସେହି ପିଜୁଳିକୁ ଧନୁଷବାଣ ଦ୍ୱାରା ଯିଏ ଲକ୍ଷ୍ୟଭେଦ କରିପାରିବ ସେ ଜିତିବ ।

ଆଦେଶ ପାଇବାର ପରମୁହୂର୍ତ୍ତରେହିଁ ନିଖିଳ ପାଣିକୁ ଚାହିଁ ବାଣମାରି ଲକ୍ଷ୍ୟଭେଦ କଲା । ନିଶାନ୍ତ ମଧ୍ୟ ତାହା କରିପାରିଲା, ତେବେ କେତେ ମୁହୂର୍ତ୍ତ ପଛେଇ ଗଲା ।

ରାଜା ଖୁସି ହୋଇ ମନ୍ତ୍ରୀଙ୍କୁ କହିଲେ, "ଏବେ ଆଉ ଚିନ୍ତା କରିବାର କ'ଣ ଅଛି ? ସମସ୍ୟା ତ ସମାଧାନ ହୋଇଗଲା । ନିଖିଳକୁ ସେନାପତି ପଦ ଦେବା ।"

ମନ୍ତ୍ରୀ ଟିକିଏ ଚୁପ୍ ରହିସାରି କହିଲେ, "ମହାରାଜ, ମୋର ପ୍ରସ୍ତାବ ଆପଣଙ୍କ ଉତ୍ଫୁଲ୍ଲତାରେ ବାଧା ଦେଇପାରେ । ସେଥିପାଇଁ କ୍ଷମା କରିବେ । ମୋ ମତରେ ନିଶାନ୍ତ ଓ ନିଖିଳ ଦୁହେଁ ଲକ୍ଷ୍ୟଭେଦ କଲେ ମଧ୍ୟ ନିଖିଳର ବାଣ ଅନେକ ଶାଖା ପତ୍ର ସବୁ ନଷ୍ଟ କରିଛି । ଅଥଚ ନିଶାନ୍ତର ବାଣ ଗୋଟିଏ ସୁଦ୍ଧା ପତ୍ର ନଷ୍ଟ ନକରି ଲକ୍ଷ୍ୟଭେଦ କରିଛି । ତେଣୁ ଏ କ୍ଷେତ୍ରରେ ନିଶାନ୍ତହିଁ ବେଶି ଯୋଗ୍ୟ । ବରଂ ଆମେ ଆଉ ଗୋଟିଏ ପରୀକ୍ଷା କରି ଦେଖିବା; ଫଳାଫଳ କ'ଣ ହେଉଛି ।"

"ଯାହା ତୁମର ଇଚ୍ଛା । ପ୍ରତିଯୋଗିତା ପାଇଁ ଯେତେ ପରୀକ୍ଷା ହେଉଛି ମୋ ପାଇଁ ସମସ୍ୟାଟି ସେତେ ଜଟିଳ ହୋଇ ଉଠୁଛି । ଏବେ ଦେଖାଯାଉ ଶେଷ ପରୀକ୍ଷାରେ କିଏ କୃତକାର୍ଯ୍ୟ ହେଉଛି ।" ରାଜା ବ୍ୟସ୍ତ ହୋଇ କହିଲେ ।

ମନ୍ତ୍ରୀ ଯୁଗନ୍ଧର ଦୁଇଟି କୁରାଢ଼ୀ ଦୁଇଜଣଙ୍କୁ ଦେଇ କହିଲେ, "ତୁମ ସମ୍ମୁଖରେ ଦୁଇଟି ଶାଳ ଗଛ । ତୁମେ ଦୁହେଁ ଯେତେଶିଘ୍ର ପାର ଗଛଟିକୁ କାଟିଦିଅ ।"

ନିଖିଳ କୁରାଢ଼ୀ ହାତକୁ ନେବା ମାତ୍ରେ ତା' ଗଛରେ ଚୋଟ ମାରିଲା । କିନ୍ତୁ ନିଶାନ୍ତ କୁରାଢ଼ୀଟି ନେଇ ଗୋଟିଏ ପଥରରେ ଘଷି ଧାର କଲା । ଏଣେ ନିଖିଳର ଗଛ ପ୍ରାୟ ଅଧାଅଧି ସରି ଆସିଲାଣି, ଅଥଚ ନିଶାନ୍ତ ଏବେ ପର୍ଯ୍ୟନ୍ତ ଆରମ୍ଭ ବି କରିନାହିଁ । ରାଜା ଜାଣିଲେ ଏବେ ନିଖିଳହିଁ ସେନାପତି ପଦ ପାଇବ । କିନ୍ତୁ କି ଆଶ୍ଚର୍ଯ୍ୟ ନିଖିଳ ଗଛ କାଟି କାଟି ହାଲିଆ ହୋଇ ପଡ଼ିଲା ଓ ବିଶ୍ରାମ କଲା । ନିଶାନ୍ତ ସେତିକବେଳେ ଗଛ କାଟିବା ଆରମ୍ଭ କଲା । କୁରାଢ଼ୀ ଏବେ ଧାରୁଆ ହୋଇ ଯାଇଥିବାରୁ ଖୁବ୍ ଶିଘ୍ର ନିଶାନ୍ତ ଗଛ କାଟି ଚାଲିଲା । ସେତେବେଳକୁ ନିଖିଳର ହାତ କ୍ଲାନ୍ତ ହୋଇ ପଡ଼ିଲାଣି । ନିଶାନ୍ତ ଅଳ୍ପ ସମୟ ମଧ୍ୟରେ ଗଛକୁ କାଟି ଦୁଇଖଣ୍ଡ କରିଦେଲା । ଏହି ଘଟଣାରେ ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ନିଶାନ୍ତର କାଟିବାର କୌଶଳତା ଦେଖି ନିଖିଳ ହତୋତ୍ସାହ ହୋଇ ଆଗରୁ କାଟିବା ଛାଡ଼ି ବସି ପଡିଥିଲା ।

ନିଶାନ୍ତ କୃତକାର୍ଯ୍ୟ ହେବାରୁ ରାଜା ଫୁଲମାଳ ଦେଇ ତାକୁ ଅଭିନନ୍ଦନ କଲେ । ମନ୍ତ୍ରୀ ଯୁଗନ୍ଧର ଓ ପ୍ରଜାମାନେ ବହୁତ ଖୁସି ହେଲେ । ସାରା ରାଜ୍ୟର ପ୍ରଜାମାନଙ୍କ ଉପସ୍ଥିତିରେ ନିଶାନ୍ତ ଦେବଗିରି ରାଜ୍ୟର ସେନାପତି ପଦ ପାଇଲା ବୋଲି ରାଜା ବିକ୍ରମବର୍ମା ଘୋଷଣା କଲେ ।





# ଭୂତଣୀ

ଗୋଟିଏ ଗ୍ରାମରେ ରାଜେଶ ନାମକ ବ୍ୟବସାୟୀଟିଏ ରହୁଥାଏ । ତା' ଘରଟି ଗ୍ରାମର ଶେଷ ପ୍ରାନ୍ତରେ । ଘରେ ସ୍ତ୍ରୀ ଓ ପୁଅଝିଅ ଦୁଇଟି । ବ୍ୟବସାୟ ଛଡ଼ା ଘରେ କିଛି କୁକୁଡ଼ା ପାଳିଥାଏ ଓ ଗାଈ ସବୁ ରଖିଥାଏ । ସେଥିରୁ ମଧ୍ୟ କିଛି ପଇସା ପତ୍ର ମିଳିଯାଏ । ଏମିତି ହୋଇ କୌଣସି ମତେ ସୁଖେ ଦୁଃଖେ ପରିବାରଟି ଚଳି ଯାଉଥାଏ ।

ରାଜେଶ ଚୁଡ଼ି ବିକି କରେ । ତା'ର ଧରାବନ୍ଧା କେତେକ ଗ୍ରାହକ ଥା'ନ୍ତି । ତା' ଛଡ଼ା ନାନା ରଙ୍ଗର ଚୁଡ଼ି ସବୁ ବୁଲି ଗଣ୍ଡିଲିରେ ରଖି ଗ୍ରାମରୁ ଗ୍ରାମାନ୍ତର ବୁଲେ ।

ରାଜେଶ ପ୍ରତ୍ୟହ ସକାଳୁ ଉଠି ଗାଈ ଦୁହେଁ, ଗାଈମାନଙ୍କୁ ଖାଇବାକୁ ଦେଇ ଚରିବାକୁ ଛାଡ଼ି ଦିଏ । ନିଜେ କିଛି ଖାଇନିଏ ଆଉ ମଧ୍ୟାହ୍ନ ଖାଦ୍ୟପୁଡ଼ାଟିଏ ସଙ୍ଗରେ ନେଇ ଚୁଡ଼ି ବିକି କରିବାକୁ ବାହାରିଯାଏ; ସନ୍ଧ୍ୟାକୁ ଫେରିଆସେ । ସେ ସାଧାରଣ ଦାମରେ ଚୁଡ଼ି ବିକି କରିବାରୁ ସମସ୍ତିଙ୍କର ପ୍ରିୟ ହୋଇଥାଏ ।

ଦିନେ ରାଜେଶ ଖରାବେଳେ ବୁଲି ବୁଲି ଗ୍ରାମ ଶେଷରେ ଥିବା ଗୋଟିଏ ବରଗଛ ପାଖରେ ଆସି ପହଞ୍ଚିଲା । ନିକଟରେ ଥାଏ କୂଅଟିଏ । ସେ କୂଅରୁ ପାଣି ଆଣି ବରଗଛ ଛାଇରେ ବସି ଆରାମ କରି ପେଟ ଭରି ଖାଇଲା । ବଳକା ଖାଦ୍ୟ ସେଇଠି ଛାଡ଼ି ଆସିଲା ବୁଲା କୁକୁର ଖାଇ ସଫା କରିଦେବ ଭାବି ।

ରାଜେଶ ଯିବା ପରେ ପରେହିଁ ବ୍ରହ୍ମରାକ୍ଷସୀଟିଏ ଆସି ସେଠାରେ ପହଞ୍ଚିଲା । ରାଜେଶର ବଳକା ଖାଦ୍ୟ ସବୁ ସେଠାରେ ପଡ଼ିଥିବାର ଦେଖିଲା । ସେତେବେଳେ ତାକୁ ବହୁତ ଭୋକ ଲାଗୁଥାଏ । ସେ ଖୁସିରେ ସେଗୁଡ଼ିକ ଖାଇ ପକାଇଲା । ଏପର୍ଯ୍ୟନ୍ତ ସେ କଞ୍ଚା ମାଂସ

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ



ଖାଉଥାଏ । ରନ୍ଧା ହୋଇଥିବା ସ୍ୱାଦିଷ୍ଟ ଖାଦ୍ୟ ସବୁ ଖାଇ ଭାବିଲା—ଆହା, ମଣିଷଙ୍କ ଖାଦ୍ୟର କି ସ୍ୱାଦ ! ବରଂ ଏବେଠାରୁ ମୁଁ ମଣିଷ ରୂପ ନେଇ ମଣିଷଙ୍କ ସହିତ ରହିବି ।

ତା'ପରେ ସେହି ବରଗଛ ମୂଳରେ ଗଙ୍ଗେଶକୁ ପ୍ରତୀକ୍ଷା କରି ବସି ରହିଥାଏ । ସନ୍ଧ୍ୟା ସମୟକୁ ଗଙ୍ଗେଶ ସେଇବାଟେ ହୋଇ ଫେରିଲା । ବରଗଛ ନିକଟରେ ଥିବା କୂଅ ମୂଳକୁ ଯାଇ ପାଣି ପିଇଲା । ହଠାତ୍ ଦେଖିଲା ସ୍ତ୍ରୀ ଲୋକଟିଏ ବରଗଛ ତଳେ ବସି କାନ୍ଦୁଛି । ତା'ର ମନ ବହୁତ ବ୍ୟଥିତ ହେଲା । ସେ ପଚାରିଲା, "ଭଉଣୀ ତୁମେ କିଏ ? ଏପରି କାନ୍ଦୁଛ କାହିଁକି ?

"ବାବୁ, ବହୁତ ଦୂର ଦେଶରେ ମୋର ଘର । ମୋ ସ୍ୱାମୀ କୁଆଡ଼େ ଘର ଛାଡ଼ି ପଳେଇଛି । ଖାଇବାକୁ ନାହିଁ । ଭାଗ୍ୟକୁ ନିନ୍ଦା କରି କାନ୍ଦୁଛି ।" ସ୍ତ୍ରୀ ଲୋକଟି କହିଲା ।

"ଓହୋ, ତେବେ ତ ବଡ଼ ଦୁଃଖର କଥା । ଠିକ୍ ଅଛି, ତମେ ଆମ ଘରକୁ ଆସ । ମୋ ସ୍ତ୍ରୀକୁ କାମଧନ୍ଦାରେ ସାହାଯ୍ୟ କରିବ । ଦରମା ତ ମୁଁ ଦେଇପାରିବି ନାହିଁ । ଅନ୍ତତଃ ପେଟଭରି ଖାଇବାକୁ ଦେବି । ଇତିମଧ୍ୟରେ ତମ ସ୍ୱାମୀ ଫେରି ଆସିଲେ ପୁଣି ତୁମ ଘରକୁ ଫେରିଯିବ ।" ଗଙ୍ଗେଶ ଦୟା ଦେଖାଇ କହିଲା ।

ସ୍ତ୍ରୀ ଲୋକଟି କହିଲା, "ବାବୁ, ଆପଣ ମୋତେ ଏତେ ସାହାଯ୍ୟ କଲେ; ଧନ୍ୟବାଦ । କିନ୍ତୁ ଗୋଟିଏ କଥା ମନେ ରଖିବେ । କରି ପାରୁ ନଥିବା କାମ ମୋତେ ଯେଉଁଦିନ ଦେବେ ସେଦିନ ମୁଁ ଘର ଛାଡ଼ି ପଳାଇବି ।"

ଗଙ୍ଗେଶ ତା'ର ସର୍ତ୍ତ ସ୍ୱୀକାର କରି ତାକୁ ସଙ୍ଗରେ ନେଇ ଘରକୁ ଗଲା । ସେଠାରେ ସବୁ ଘଟଣା ନିଜ ସ୍ତ୍ରୀକୁ କହିଲା । ତା'ର ସ୍ତ୍ରୀ ପଚାରିଲା, "ଭଉଣୀ ତୁମ ନାମ କ'ଣ ?"

"ମୋ ନାମ ଦାନବୀ," ସେ କିଛି ନଭାବି କହି ପକାଇଲା ।

ତା'ପର ଦିନଠାରୁ ଗଙ୍ଗେଶର ସ୍ତ୍ରୀକୁ ଘର କାମରେ ସେ ବହୁତ ସାହାଯ୍ୟ କଲା । ପ୍ରାୟ ଘର ଗୋଟାକର କାମ ଦାନବୀ କରୁଥାଏ ।



ଦିନେ ବହୁତ ରାତରେ ରାଜେଶ ଘରକୁ ଫେରିଲା । ଶୀତ ଦିନ, ଖଟ ଉପରେ ରେଜେଇ ଘୋଡ଼ହୋଇ ତା' ସ୍ତ୍ରୀ ଛୁଆମାନଙ୍କୁ ଧରି ଶୋଇଥାଏ । ତଳେ ଚଟାଣରେ ଦାନବୀ ମଧ୍ୟ ଘୋଡ଼ହୋଇ ଶୋଇଥାଏ । ଘର ଭିତର ପଟରୁ ବନ୍ଦ । ରାଜେଶ କବାଟ ବାଡ଼େଇବାରୁ ତା' ସ୍ତ୍ରୀ ଦାନବୀକୁ କହିଲା କବାଟ ଖୋଲିବାକୁ । କିନ୍ତୁ ଏ କ'ଣ ? ରାଜେଶର ସ୍ତ୍ରୀ ଦେଖିଲା ଶୋଇବା ସ୍ଥାନରୁ ଶୋଇରହି ମଧ୍ୟ ଦାନବୀ ହାତ ବଢ଼ାଇ କବାଟ ଖୋଲିଲା । ହଠାତ୍ ହାତଟା ଦଶହାତ ଲମ୍ବା ହୋଇଗଲା । ଏସବୁ ଦେଖି ରାଜେଶର ସ୍ତ୍ରୀ ଛନିଆରେ କମ୍ପୁଛି, କିନ୍ତୁ ନ ଦେଖିଲା ପରି ନୀରବ ରହିଲା । ପରଦିନ ସେ ନିଦରୁ ଉଠି ରାଜେଶକୁ ସବୁ କଥା କହିଲା । ସେ କହିଲା, "କାମ ସୁନ୍ଦର କରୁଛି, ହେଲେ ତା'ର ନାମ ଅନୁସାରେ ସେ ଦାନବୀ ହେବ ବୋଧହୁଏ, ମାନବୀ ନୁହେଁ ।"

ରାଜେଶ ମଧ୍ୟ ଭାବି ଦେଖିଲା ଯେ ଗତ କାଲି କବାଟ ଖୋଲିବା ପରେ ସେ ଘର ଭିତରକୁ ପଶି ଆସି ଦେଖିଲା ଯେ ଦାନବୀ ସପ ଉପରେ ଘୋଡ଼ହୋଇ ଶୋଇଛି । କବାଟ ଖୋଲିବା ପରେ ଜଣେ ନିଜ ବିଛଣାକୁ ଆସିବାକୁ କିଛି ସମୟ ତ ଲାଗିବ । ଏତେ ଶୀଘ୍ର କିପରି ବିଛଣାକୁ ଗଲା ? ଏବେ ସେ ନିଜ ସ୍ତ୍ରୀର କଥା ଭଲ ଭାବରେ ଉପଲବ୍ଧି କରି ପାରିଲା । କିନ୍ତୁ ତାକୁ ତ ନିର୍ଦ୍ଦୟ ଭାବରେ ବାହାର କରି ଦେଇ ହେବନାହିଁ ! ଏବେ ସେ ଗୋଟାଏ ଉପାୟ ପାଞ୍ଚିଲା । ତା'ର ମନେ ପଡ଼ିଲା ଦାନବତାର ସର୍ତ୍ତ କଥା ।

ରାଜେଶ ଦାନବୀକୁ ଡାକି କହିଲା, "ଦେଖ ଭଉଣୀ, ଆମ ଘର ଗୃହପାଖ ଘରି ଅରମା ହୋଇ ପଡ଼ିଛି । ଯାହା ଫସଲ କଲେ ବୁଲା ଗାଈ ପଶି ଖାଇ ଯାଉଛନ୍ତି । ଗୋଟିଏ ପାଚେରି ତମେ ଆମ ଜାଗାର କଡ଼େ କଡ଼େ ବୁଲାଇ ଦିଅନ୍ତ କି ?"

ଆଶ୍ଚର୍ଯ୍ୟ । ଦାନବୀ କାମରେ ଲାଗିଗଲା । ସୁନ୍ଦର ପାଚେରି ତିଆରି କରି ଭଲ ଭଲ ଫୁଲଗଛ ଓ ଫଳ ଗଛ ସବୁ ଲଗାଇ ଏକ

ସୁନ୍ଦର ବଗିଚ୍ଛ ମଧ୍ୟ ତିଆରି କଲା । ତା'ପରେ ରାଜେଶ ଓ ଗାଁ ବାଲା ଜାଣିଗଲେ ଏହାର ରହସ୍ୟ । ରାଜେଶ ତାକୁ ଛାଡୁ ନଥାଏ । କିନ୍ତୁ ଗ୍ରାମବାସୀମାନେ ସର୍ବଦା ଆସି ରାଜେଶକୁ ବ୍ୟସ୍ତ କଲେ, ସେମାନେ କହିଲେ ଶିଘ୍ର ତାକୁ ତଡ଼ିଦିଅ ନହେଲେ ତୁମେ ଗ୍ରାମ ଛାଡ଼ି ପଳାଇ ଯାଅ କିମ୍ବା ତମେ କିଛି କରି ନପାରିଲେ ଆମକୁ ଛାଡ଼ିଦିଅ ଆମେ ଠିକ୍ କରିଦେବୁ । ରାଜେଶ କେବଳ କହିଲା; "ଆଛା ଦେଖାଯିବ । ଆପଣମାନଙ୍କର ଯାହା ଇଚ୍ଛା ।"

ଦିନେ ରାଜେଶର ଘରେ ତା'ର ପିଲା ଦୁହେଁ ଖେଳୁଥା'ନ୍ତି ଓ ତାଙ୍କ ପଡ଼ୋଶୀ ଲୋକ ସବୁ ବସି ରାଜେଶ ସହିତ ଗପ କରୁଥା'ନ୍ତି । ଏଇ ସମୟରେ ମୂଷାଟି ବିଲେଇଟିଏ ଗୋଡ଼ାଇବାରୁ ଯାଇ ପ୍ରାଣ ବିକଳରେ ଗାତ ଭିତରେ ପଶିଗଲା । ଦାନବୀକୁ ପିଲାମାନେ କହିଲେ, ଦାନବୀ ଅପା, କି ସୁନ୍ଦର ମୂଷାଟିଏ ! ଧରି ଆଣି ଦେବ ?" "ନିଶ୍ଚୟ" କହି ସେ ନିଜେ ଗୋଟିଏ ମୂଷା ରୂପ ନେଇ ଗାତ ଭିତରେ ପଶିଗଲା । ସେଠାରେ ବସିଥିବା ପଡ଼ୋଶୀଙ୍କ ଭିତରୁ ଜଣେ ବସି ବସି ସେସବୁ ଲକ୍ଷ୍ୟ କରୁଥିଲେ । ସେ ହଠାତ୍ ଦୌଡ଼ି ଆସି ମାଟି ଟୋକେଇଏ ଗୋଳେଇ ପକାଇ ଗାତଟି ବନ୍ଦ କରିଦେଲେ ଓ ପୁଣି ରାଜେଶ ପାଖକୁ ଲେଉଟି ଆସିଲେ ।

"କ'ଣ ହେଲା ଭାଇ, ହଠାତ୍ କୁଆଡ଼େ କଥା ମଝିରୁ ଉଠିଗଲ ?" ରାଜେଶ ପଚାରିଲା ।

"ଆଜ କିଛି କଥାବାର୍ତ୍ତା ହେବାର ଦରକାର ନାହିଁ । ତୁମର ସମସ୍ତ ସମସ୍ୟା ବହୁ ସହଜରେ ସମାଧାନ ହୋଇଛି । ଏବେ ଆମେ ଯାଉଛୁ । ନମସ୍କାର ।" ପଡ଼ୋଶୀଟି ଦାନବୀ ସମ୍ପର୍କରେ ଘଟିଥିବା ସବୁ କଥା କହିଲେ । ସମସ୍ୟାଟି ଏତେ ସହଜରେ ସମାଧାନ ହୋଇଥିବାରୁ ସମସ୍ତେ ଆଶ୍ୱସ୍ତ ହେଲେ ଓ ପ୍ରାଣ ଖୋଲି ହସିବାକୁ ଲାଗିଲେ ।





## ବିଶାଳ ଘାଟି

ଆମେରିକାର ଆରିଜୋନାରେ ସ୍ଥିତ ପର୍ବତଘାଟି ସାରା ପୃଥିବୀର ସର୍ବାପେକ୍ଷା ବିଶାଳ ଘାଟି । ୪ ମାଇଲ୍‌ରୁ ଆରମ୍ଭ କରି ୧୩ ମାଇଲ୍ ପର୍ଯ୍ୟନ୍ତ ଚଉଡ଼ା ଓ ୨୧୭ ମାଇଲ ପର୍ଯ୍ୟନ୍ତ ବ୍ୟାପ୍ତ ଏହି ଘାଟି ମାନଙ୍କର ଗଭୀରତା ୭୦୦୦ ଫୁଟ୍ । ୨୨୫ ମିଲିଅନ୍ ବର୍ଷ ପୂର୍ବେ କଲରାଡୋ ନଦୀର ଧାରା ଯୋଗୁ ଏ ଘାଟି ସବୁ ଉତ୍ପନ୍ନ ହୋଇଥିଲେ । ଜଳବାୟୁର ପରିବର୍ତ୍ତନ ଯୋଗୁ ଏସବୁ ଘାଟିର ଆକୃତି ବିଚିତ୍ର ଦେଖାଯାଏ ।

ସାହାରା ମରୁଭୂମିରେ ବାଲୁକା ପଙ୍କନ ସବୁ କିଛି ଇଞ୍ଚରୁ ଆରମ୍ଭ କରି ପ୍ରାୟ ୪୦୦ ଫୁଟ ପର୍ଯ୍ୟନ୍ତ ଗଭୀର ହୋଇଥାଏ ।

## ସାହାରା



ରକ୍ତମସ୍ତୁ ମାଛ

ଆଣ୍ଟାର୍କଟିକାର ବରଫରେ ରହୁଥିବା ମାଛମାନଙ୍କର ରକ୍ତ ବାହାରୁ ସ୍ୱଚ୍ଛ ଦେଖାଯାଏ । ରକ୍ତଧାରୀ ପ୍ରାଣୀଙ୍କ ମଧ୍ୟରୁ ଶତକଡ଼ା ୯୦ ପ୍ରାଣୀଙ୍କ ମଧ୍ୟରେ ଥିବା ହେମୋଗ୍ଲୋବିନ୍ ଏମାନଙ୍କ ରକ୍ତରେ ନାହିଁ, ଯାହା ପ୍ରାଣବାୟୁକୁ ଅଙ୍ଗ ପ୍ରତ୍ୟଙ୍ଗରେ ପ୍ରସାରଣ କରିବାରେ ସାହାଯ୍ୟ କରେ ।



## ହାତୀର ନିଦ

ହାତୀ ସାରାଦିନ ମଧ୍ୟରେ କେବଳ ଦୁଇଘଣ୍ଟା ମାତ୍ର ଶୋଇଥାଏ ।

# ଫଟୋ-ପରିଚୟ-ପ୍ରତିଯୋଗିତା: ପୁରସ୍କାର ଟ.୫୦

**ପୁରସ୍କୃତ ପରିଚୟୋକ୍ତି ଅକ୍ଟୋବର ୧୯୮୮ ସଂଖ୍ୟାରେ ପ୍ରକାଶ ପାଇବ**



Bishan Maheshwari



Ravindra S. Kamboj

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଅଗଷ୍ଟ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର। ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ। ★ ପରିଚୟୋକ୍ତି ସହ ଠିକଣା ପୋଷ୍ଟକାର୍ଡରେ ଲେଖି ନିମ୍ନ ଠିକଣାରେ ପଠାନ୍ତୁ :

**ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬**

---

## ଜୁନ୍ '୮୮ ପ୍ରତିଯୋଗିତାର ଫଳ

**ପ୍ରଥମ ଚିତ୍ର : ଭଲକରି ଫଟୋ ଉଠାଇ ଦେବୁ, 'ଜହ୍ନମାମୁଁ'ରେ ମୁଁ ତାହା ଛପିବ !**

**ଦ୍ୱିତୀୟ ଚିତ୍ର : ଭଲହେବ ଫଟୋ ହସିବୁ ଯଦି, ତୋ' ସାଥେ ହେବ ମୁଁ ଦ୍ୱିତୀୟ ଛବି !!**

**ପୁରସ୍କାର ବିଜୟିନୀ : ସୁଜାତା ମହାନ୍ତି, (ଭୁବନେଶ୍ୱର)**

ବିଜୟିମାନଙ୍କୁ ଅଭିନନ୍ଦନ, ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।


# ଜହ୍ନମାମୁଁ

**ବାର୍ଷିକ ଦେୟ : ଟ. ୩୦-୦୦**

ମନିଅର୍ଡର ପଠାଇବା ଠିକଣା :

ଡଲ୍‌ଟନ୍ ଏଜେନ୍‌ସିଜ୍, ଚନ୍ଦାମାମା ବିଲ୍‌ଡିଙ୍ଗସ୍, ବଡପଳନୀ, ମାଡ୍ରାସ-୬୦୦୦୨୬

ବିଦେଶ ସକାଶେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :

ଚନ୍ଦାମାମା ପବ୍ଲିକେଶନସ୍, ଚନ୍ଦାମାମା ବିଲ୍‌ଡିଙ୍ଗସ୍, ବଡପଳନୀ, ମାଡ୍ରାସ-୬୦୦୦୨୬

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISHWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.

# "For every breath one takes, a child dies from a vaccine - preventable disease."

Every year, 3.5 million children die for want of vaccine. Imagine, the population of cities of the size of Ahmedabad or Bangalore annihilated every year.

Anil Kumar Panigrahi

## "Can we afford to wait?"

Help implement POLIOPLUS PROGRAMME
Rotary International
Supporting the immunization programmes of UNICEF and WHO.

Besides funding for vaccines, POLIOPLUS helps increase the protection levels of those programmes through SOCIAL MOBILIZATION i.e. community education, volunteer support and public promotion.

Rotary will fight Polio.Plus measles, diphtheria, tuberculosis, whooping cough and tetanus.

For a child it could be a matter of life or limb.

Give generously to **PolioPlus**



*Cut and mail to :*
**Chairman**
**POLIOPLUS CAMPAIGN TRUST**
128, Golf Links
New Delhi 110 003.

**Here's what You Can Do**

YES, WE WISH TO SUPPORT THE POLIOPLUS CAMPAIGN TRUST
We enclose our Cheque/Draft of Rs. ..........
Name ..........
..........
Designation ..........
..........
Company Address ..........
..........
Phone No. ..........

*Cheques/Drafts should be drawn in favour of POLIOPLUS CAMPAIGN TRUST payable in Bombay. Contributions are exempted from income tax under section 80 (G) of the Income Tax Act, 1961.*

*CMP*



*"YOU HAVE NOT DONE ENOUGH AS LONG AS YOU ARE CAPABLE OF DOING MORE." ACT NOW.*